


ଆବିର୍ଭାବ– ୪ । ୧୦ । ୧୯୦୧

ତିରୋଭବ– ୨୪ । ୪ । ୧୯୮୮

# ଅଗ୍ରଲେଖ

ମନୁଷ୍ୟ ଜୀବନର ଗତିପଥ ବିଚିତ୍ର । ଏହାକୁ ନଦୀର ପ୍ରବହମାନ ଧାରା ସହ ସମାନ ବୋଲି କେହି କେହି କହିଥାନ୍ତି । ନଦୀର ଉତ୍ସସ୍ଥଳ ଗିରିକନ୍ଦରରେ ସଗୁପ୍ତ, ପାର୍ବତ୍ୟ ଶିଳାଶଯ୍ୟାରେ ଏହାର ଗତି କ୍ଷୀପ୍ର, ସମତଳ ଭୂମିର ବାଲୁକା ଶଯ୍ୟାରେ ଏହାର ରୂପ ଶାନ୍ତ ଓ କଳେବର ବିସ୍ତୃତ ପୁଣି ଗତି ପ୍ରବାହର ଅନ୍ତିମ ପର୍ଯ୍ୟାୟରେ ସ୍ୱକୀୟ ପରିଚୟକୁ ଅନନ୍ତ ସାଗରର ଉର୍ମିମାଳା ମଧ୍ୟରେ ନିଶ୍ଚିହ୍ନ କରିଦେବା ଲାଗି ଏହା ଚଞ୍ଚଳ । ସେଭଳି ମଣିଷର ଜନ୍ମ ଏକ ସୀମିତ ଅପରିଚିତ ଗୃହସ୍ଥଳୀର ପରିବେଶରେ ହେଲେ ହେଁ ସମୟ କ୍ରମେ ତା'ର ବ୍ୟକ୍ତିତ୍ୱ ପାରମ୍ପରିକ ପ୍ରଭବ, ଶିକ୍ଷାଦୀକ୍ଷା ଓ ସାମାଜିକ ସମ୍ପର୍କ ଫଳରେ ସମ୍ପ୍ରସାରିତ ହୁଏ । ସ୍ଥଳ ବିଶେଷରେ ଦେଖାଯାଏ କୌଣସି ଏକ ଅଜ୍ଞାତ ଶୁଭଙ୍କର ଶକ୍ତି ପ୍ରଭବରେ ପରିସ୍ଥିତିର ସକଳ ପ୍ରତିକୂଳ ତାକୁ ଅତିକ୍ରମ କରି ମନୁଷ୍ୟ ପ୍ରାଣର ଆଶା ଆକାଙ୍କ୍ଷା ଅତ୍ୟନ୍ତ ଉତ୍ସାହ ସହକାରେ ଉନ୍ନତି ପଥରେ ଧାବିତ ହୁଏ, ତା'ଠାରେ ଥିବା ଅନନ୍ତ ସମ୍ଭାବନା ବହୁମୁଖୀ ବିକାଶର ପଥ ଖୋଜେ । ଏ ବିକାଶର ପରିସର ପ୍ରସାରିତ । ଏହା ବୈଷୟିକ ହୋଇ ପାରେ, ଜ୍ଞାନ ବିଜ୍ଞାନ କ୍ଷେତ୍ରରେ ଆତ୍ମ ପ୍ରତିଷ୍ଠାର ଆସ୍ପୃହା ହୋଇପାରେ କିମ୍ବା କଳା, ସାହିତ୍ୟ ଓ ସଙ୍ଗୀତ କ୍ଷେତ୍ରରେ ସାଧନାର ଅଭିବ୍ୟକ୍ତି ଓ ସିଦ୍ଧି ହୋଇପାରେ । ସିଦ୍ଧିର ଚରମ ଲକ୍ଷ୍ୟ ପ୍ରତି ଅନାସକ୍ତ ଭବରେ ମନୁଷ୍ୟ ଜୀବନରେ ସାଧନାର ଏକାଗ୍ରତା ଓ ଅଧ୍ୟବସାୟ ପ୍ରକଟିତ ହୁଏ । ଶେଷରେ ଦିନେ ସୀମିତ ଅପରିଚିତ ପରିସର ମଧ୍ୟରେ ଭୂମିଷ୍ଠ ହୋଇଥିବା ମଣିଷ ଶିଶୁ କାଳ ବକ୍ଷରେ ନିଜ ଅସାମାନ୍ୟ କୃତିତ୍ୱ ନିମନ୍ତେ ସ୍ମରଣୀୟ ହୁଏ । ଏହାହିଁ ତ ସାଧନା ଓ ସିଦ୍ଧିର ପରିସର ।

ଅଧ୍ୟାପକ ଶ୍ରୀଧର ଦାସଙ୍କ ଜୀବନର ଧାରା ଅନୁଶୀଳନ କଲେ ଏହି ସତ୍ୟର ସୂତ୍ରଟି ଜାଣି ହୁଏ । ଶ୍ରୀ ଦାସଙ୍କ ଶୈଶବର ପରିବେଶ ହୁଏତ

ତାଙ୍କଠାରେ ନିହିତ ସମ୍ଭାବନାର ବିକାଶ ନିମନ୍ତେ ଅନୁକୂଳ ନହେଲା । କିନ୍ତୁ ତାଙ୍କଠାରେ ଥିବା ପ୍ରତିଭା, ବ୍ୟକ୍ତିତ୍ୱ ବିକାଶର ଅଫୁରନ୍ତ ଆସ୍ପୃହା ନାନା ବାଧା ଓ ପ୍ରତିକୂଳତାକୁ ତୁଚ୍ଛକରି ତାଙ୍କୁ ଉନ୍ନତି ଅଭିମୁଖୀ କରାଇଥିଲା । ସେ କାଳରେ ଆଜି ଭଳି ଜୀବନରେ ସାମାଜିକ ପ୍ରତିଷ୍ଠାର ମାନଦଣ୍ଡ ପ୍ରଶାସନ କ୍ଷେତ୍ରରେ ଉଚ୍ଚ ପଦବୀ ଅଧିକାର ହୁଏତ ଏକକ ବିଚାର ନଥିଲା ପୁଣି ସେଥିଲାଗି ସୁଯୋଗର ପରିସର ମଧ୍ୟ ଥିଲା ଅତି ସୀମିତ । ତେଣୁ ଶ୍ରୀଧର ଦାସ ପ୍ରଥମରେ ଶିକ୍ଷକତାକୁ ଆଦରି ନେଇଥିଲେ । ବାଣପୁର, ଜଗତସିଂହ-ପୁର ଭଳି ପ୍ରତିଷ୍ଠିତ ବିଦ୍ୟାଳୟରେ ସୁନାମ ସହ ଶିକ୍ଷକତା କରିଥିଲେ ସୁଦ୍ଧା ଅଧିକ ଏକାଡେମିକ ଉନ୍ନତି ଲାଗି ତାଙ୍କଠାରେ ଥିଲା ଅଦମ୍ୟ ଅଭିଳାଷରେ ଓଡ଼ିଆ ସାହିତ୍ୟରେ ଏମ୍. ଏ. ଉପାଧି ଲାଭ କରି ନୂତନ ସ୍ଥାପିତ ଏବର ଖ୍ରୀଷ୍ଟ କଲେଜରେ ଅଧ୍ୟାପକ ହେଲେ । ଓଡ଼ିଆରେ ଅଧ୍ୟାପନା କଲାବେଳକୁ ତାଙ୍କଠାରେ ଇଂରେଜୀ ଓ ସଂସ୍କୃତ ସାହିତ୍ୟରେ ଯଥେଷ୍ଟ ଜ୍ଞାନ ସଙ୍ଗକୁ ଶିକ୍ଷାନୁଷ୍ଠାନ ପରିଚାଳନାର ପରିପକ୍ୱ ଅଭିଜ୍ଞତା ଥିଲା । ତା ସଙ୍ଗକୁ ଜଣେ ଅଙ୍ଗୀକାର ବଦ୍ଧ ଶିକ୍ଷକ ଭାବେ ସେ ସମର୍ପିତ ପ୍ରାଣରେ ଉକ୍ତ ଶିକ୍ଷାନୁଷ୍ଠାନର ଅଧ୍ୟାପନା, ପ୍ରଶାସନ ଓ ବିକାଶ ପ୍ରକ୍ରିୟାରେ ନିଜ ଶକ୍ତି ଓ ସାଧନା ସମ୍ପୂର୍ଣ୍ଣ ଭାବେ ନିୟୋଜିତ କରିଥିଲେ ।

କେବଳ ଜୀବିକା ଅର୍ଜନର ସମ୍ମାନଜନକ ପନ୍ଥା ରୂପେ ଶିକ୍ଷାନୁଷ୍ଠାନରେ ଅଧ୍ୟାପନା ଅଧ୍ୟାପକ ଦାସଙ୍କ ଜୀବନର ଏକମାତ୍ର ସନ୍ତୋଷ ନ ଥିଲା । ସେ ଥିଲେ ଯଥାର୍ଥରେ ଜଣେ ନିଖିଳର କର୍ମଯୋଗୀ । ତେଣୁ ତେଣୁ ଶିଶୁ ସାହିତ୍ୟ ସୃଷ୍ଟି, ବିଶ୍ୱସାହିତ୍ୟର କ୍ଲାସିକ ଗ୍ରନ୍ଥର ଅନୁବାଦ । ପାଠ୍ୟପୁସ୍ତକ ଓ ବ୍ୟାକରଣ ରଚନା, ଅଭିଧାନ ପ୍ରଣୟନ ଏ ସକଳ କ୍ଷେତ୍ରରେ ତାଙ୍କ ସାଧନାର ଦିଗ ପ୍ରସାରିତ ହୋଇଥିଲା । ପ୍ରତ୍ୟକ୍ଷ ଦର୍ଶୀମାନେ ଜାଣନ୍ତି ଅଧ୍ୟାପକ ଦାସ ଅଧ୍ୟାପନା ସମାପ୍ତି ପରେ କଲେଜର ପ୍ରଶାସନିକ ଦାୟିତ୍ୱ ନିର୍ବାହ କରି ବହୁ ବିଳମ୍ବରେ ଘରକୁ ଫେରିଥାନ୍ତି । ଘରେ ନିତ୍ୟ ନୈମିତ୍ତିକ ଜୀବନ କ୍ରିୟା ପରେ ଅବସର ସମୟ କୌଣସି ନା କୌଣସି ଲେଖାପଢ଼ା କାମରେ ତାଙ୍କ ବ୍ୟସ୍ତତା ପ୍ରକାଶିତ ହୁଏ । ତେଣୁ ଶତାଧିକ ପୁସ୍ତକ ରଚନା ତାଙ୍କ ପକ୍ଷରେ ସମ୍ଭବ ହୋଇଥିଲା । ନିଜ ଜୀବନର ବୈଷୟିକ ଉନ୍ନତି ସାଙ୍ଗକୁ ଭାଷା ସାହିତ୍ୟର ବିକାଶ ସାଧନ ତାଙ୍କ ଧ୍ୟେୟ ଥିଲା ।

ସାଧାରଣତଃ ଦେଖାଯାଏ, ନିଜ ବୈଷୟିକ ଉନ୍ନତିରେ ବ୍ୟସ୍ତ ଥିବା ଲୋକ ସାମାଜିକ ସୌହାର୍ଦ୍ଦ୍ୟପୂର୍ଣ୍ଣ ସମ୍ପର୍କ ରକ୍ଷାରେ ସମର୍ଥ ହୁଅନ୍ତି ନାହିଁ । ଏ କ୍ଷେତ୍ରରେ ଅଧ୍ୟାପକ ଦାସ ଥିଲେ ବ୍ୟତିକ୍ରମ । ଏକାନ୍ତ କର୍ତ୍ତବ୍ୟ ନିଷ୍ଠ ବୈଷୟିକ କ୍ଷେତ୍ରରେ ଉନ୍ନତି ଅଭିଳାଷୀ ହେଲେ ସୁଦ୍ଧା ସେ ନିଜ ସହଯୋଗୀ ଅଧ୍ୟାପକ, ଛାତ୍ର ଓ ପ୍ରତିବେଶୀ ବନ୍ଧୁ ମହଲରେ ଏକାନ୍ତ ଅନ୍ତରଙ୍ଗ, ମିଷ୍ଟଭାଷୀ ଥିଲେ । ଯେ କୌଣସି ବ୍ୟାପାରରେ ନିଜ ପରିଣତ ଅଭିଜ୍ଞତାର ସୁପରାମର୍ଶ ଦେଇ ସେ ଅନ୍ୟମାନଙ୍କର ବହୁ ଉପକାର କରୁଥିଲେ ।

ଅଧ୍ୟାପକ ଦାସଙ୍କର ବ୍ୟକ୍ତିଗତ ଜୀବନର ବିକାଶ ଧାରା ନାନା ଶୁଭଙ୍କର ସୂଚନାର ଦୃଷ୍ଟାନ୍ତରେ ସମୃଦ୍ଧ । ତାଙ୍କର ସମସାମୟିକ ସହକର୍ମୀ ଛାତ୍ର ଓ ବନ୍ଧୁମାନେ ତାଙ୍କ ସ୍ମୃତିଚାରଣା କରି ନିଜ ଅନୁଭୂତି ପ୍ରକାଶ କରି-ଛନ୍ତି । ଏ ଅନୁଭୂତି କେବଳ ଅଧ୍ୟାପକ ଦାସଙ୍କ ପ୍ରତି ସେମାନଙ୍କ ସମ୍ମାନ-ବୋଧ ବା ସ୍ମୃତି ଅର୍ଘ୍ୟ ମାତ୍ର ନୁହେଁ । ଏକ ବ୍ୟକ୍ତିତ୍ୱ ବିକାଶର ଚିତ୍ତାକର୍ଷକ ଓ ଶିକ୍ଷଣୀୟ କାହାଣୀରେ ଏହା ମନୋଜ୍ଞ । ଏହା ଆମର ଭାବୀ ପୁରୁଷଙ୍କୁ ନିଶ୍ଚିତ ଭାବେ କାମୋଦ୍ୟମ, ଲକ୍ଷ୍ୟସାଧନର ନିଷ୍ଠା ଓ ସଫଳତାର କୃତିତ୍ୱରେ ଉଦ୍‌ବୁଦ୍ଧ କରିବ । ଅଧ୍ୟାପକ ଦାସଙ୍କ ନିମନ୍ତେ ନିଜର ସ୍ମୃତି ଅର୍ଘ୍ୟ ପ୍ରଦାନ ଓ ନୈତିକ ଦାୟିତ୍ୱ ସମ୍ପାଦନରେ ତାଙ୍କ ବଂଶଧରମାନେ ଏହି ପୁସ୍ତକ ପ୍ରକାଶର ଯେଉଁ ଦାୟିତ୍ୱ ବହନ କରିଛନ୍ତି ତାହା ଏକ ପ୍ରଶଂସନୀୟ ସାଧୁକାର୍ଯ୍ୟ ।

ଶ୍ରୀନିବାସ ମିଶ୍ର

# ସାର୍‌ଙ୍କ ସ୍ମୃତି ଏବଂ ସ୍ମୃତି ଚାରଣ

ପ୍ରଫେସର ଡକ୍‌ଟର ଗୋପାଳ ଚନ୍ଦ୍ର ମିଶ୍ର

ତାଙ୍କ କଥା ମନେ ପଡ଼ିଲେ, ସାମନାରେ ତାଙ୍କର ଦୀର୍ଘ ଚେହେରଟି କେବଳ ଉର୍ଦ୍ଧ୍ୱମାରେ ନାହିଁ, ଢେର ଢେର ସ୍ମୃତିର ପତକା ପରଦାର ଅନ୍ତରାଳରୁ କେତେ ଦିନ କେତେ ମାସ ଏବଂ କେତେ ବର୍ଷର ଚହଲ ଚହଲ ମୁହୂର୍ତ୍ତ ଗୁଡ଼ିକ ଜୀବନ୍ତ ହୋଇ ଉଠନ୍ତି । ନୂଆ ନୂଆ ରୂପରେ ବିଗତ ଦିନର ଘଟଣା ଗୁଡ଼ିକ ସମୁଦ୍ର ତରଙ୍ଗ ଭଳି ମନର ବେଳାଭୂମିରେ ନାଚି ନାଚି ଆସନ୍ତି । ହେଇତ, ସାର୍ ଥିଲେ, ହେଇତ, ସେହି ବାଣପୁରର ଶାଳିଆ ନଈ କୂଳ ଭୂମି, ସେହି ଉତ୍ତରାୟଣୀ ଆମ୍ବ ତୋଟା, ସେହି ଆମ୍ବ ତୋଟାର ବହୁ ଆଲିଙ୍ଗନରେ ଦୁଇ ଗ୍ଭରିଟା ନାଗେଶ୍ୱର ଗଛ । ହେଇପରା ଫଗୁଣ ମାସର ପେଣ୍ଠା ପେଣ୍ଠା ଆମ୍ବ ବଉଳ ପିନ୍ଧି ଗଛଗୁଡ଼ିକ ଗୋଟାଏ ମୁନୀ ଆଶ୍ରମର କାଇଦାରେ ଠିଆ ହୋଇଛନ୍ତି । ଆମ୍ବ ବଉଳର ସେ ବାସନାରେ ଆତ୍ମା ଯେପରି କେଉଁ ସ୍ୱପ୍ନପୁରୀକୁ କ୍ଷେପି ଯାଉଛି । ହୋଇ-ପାରେ ମାତ୍ର ନାଗେଶ୍ୱର ଫୁଲର ଚେପ୍‌ଟା ଚେପ୍‌ଟା ପାଖୁଡ଼ାରୁ ଝରି ପଡୁଥିବା ମତୁଆଲ ବାସନାରେ ଯୁବକ ଯେପରି ସଂସାରର ଜଂଜାଳରୁ ସେହି ମୁହୂର୍ତ୍ତରୁ ଦୂରେଇ ଯାଇ ଧ୍ୟାନମଗ୍ନ ହୋଇ ଯାଉଛି । ସେହି ଧ୍ୟାନ ଏବଂ ଧାରଣାର ଲକ୍ଷ୍ୟ ହେଉଛି ସେ ହେବ ଏତେ ବଡ଼ ଦୁନିଆରେ ଗୋଟାଏ ଭିକ୍ଷୁ । ହୋଇପାରେ ସେ ଗ୍ରହିବ ଜୀବନରେ ମୁକ୍ତି ଏବଂ ଆଲୋକର ନିର୍ବାଣ ଶିଖା । ତାର ସେହି ଚେତନାରେ ଥିବ ପ୍ରେମ ଏବଂ ପ୍ରଣୟର ନିଷ୍ଠା, ଆଶ୍ରମ ଜୀବନର ଏକନିଷ୍ଠ ଭକ୍ତି ।

ଅଧ୍ୟାପକ ଶ୍ରୀଧର ଦାସ ବାଣପୁର ହାଇସ୍କୁଲରେ ମୋର ପରମ ଧ୍ୟେୟ ସାର୍ ଥିଲେ । ଅବଶ୍ୟ କଲେଜରେ ସେ ମୋର ସାର୍ ନଥିଲେ,

ମାତ୍ର ସଂକ୍ଷେପରେ ଏହା କହିଲେ ଯଥାର୍ଥ ହେବ ଯେ ସେ ମୋର ଜୀବନର ସାର୍ ଥିଲେ ଏବଂ ମୋର ପଥ ପ୍ରଦର୍ଶକ ଥିଲେ । ହାଇସ୍କୁଲରେ ପଢ଼ିବା ସମୟରେ ସେ ନିର୍ଦ୍ଦିଷ୍ଟ ପିରିଅଡ୍‌ରେ ମୋର ଇଂରେଜୀ ରଚନା ସଂଶୋଧନ କରିଥିଲେ, କଲେଜରୁ ଉତ୍ତୀର୍ଣ୍ଣ ହେବା ପରେ ସେ ମୋର ଚାକିରୀ ପାଇଁ ଦରଖାସ୍ତ ଡ୍ରାଫ୍ଟ କରି ଦେଇଥିଲେ ଏବଂ ଚାକିରୀରେ କେବେ କେମିତି କର୍ତ୍ତୃପକ୍ଷଙ୍କର ଗୋପନ ପତ୍ର ପାଇଲେ ସାର୍ ମୋ ପାଇଁ କୈଫିୟତ ପତ୍ର ଲେଖି ଦେଉଥିଲେ । ସୁବିଧା ଅସୁବିଧା ସମୟରେ ସାର୍ ହିଁ ମୋ ପାଇଁ ଥିଲେ ନିକଟତମ ଶୁଭକାଂକ୍ଷୀ ଏବଂ ଉପଦେଷ୍ଟା । ମୋ ପାଇଁ ତାଙ୍କର ଯେଉଁ ଅତୁଟ ଶ୍ରଦ୍ଧା ତାହା ଭୁଲିବାର ନୁହେଁ, କି ତାଙ୍କ ଋଣ ପରିଶୋଧ କରିବା ମଧ୍ୟ ସହଜ ନୁହେଁ ।

ବାଣପୁର ହାଇସ୍କୁଲର ସାଳିଆ ନଦୀ ଏବଂ ଆମ୍ରକୁଞ୍ଜ ବେଷ୍ଟିତ ଘଣ୍ଟଶିଳା ପଚ୍ଚତର ଛାୟା ଘନ ପରିବେଶ ଏବଂ ସ୍କୁଲର ଅନତି ଦୂରରେ ସାର୍ ତାଙ୍କର ବ୍ୟକ୍ତିଗତ ଉଦ୍ୟମରେ ନିର୍ମାଣ କରିଥିବା ଚାଳ ଘରଟିର ଅବସ୍ଥିତି ସହିତ ମୋର ସ୍କୁଲ ଛାତ୍ର ଜୀବନ ଯେତିକି ନିବିଡ଼ ଭାବରେ ଜଡ଼ିତ, ପରବର୍ତ୍ତୀ କାଳରେ ମୋର କଲେଜ ଛାତ୍ର ଜୀବନ ଏବଂ କଲେଜ ପରବର୍ତ୍ତୀ ଅଧ୍ୟାପକ ଜୀବନ ବହୁ ଭାବରେ ଗୋଟାଏ ଅପୂର୍ବ ପ୍ରେରଣାରେ ସଂପର୍କିତ ହୋଇ ପାରିଥିଲା । ସେହି ସମୟର ବାଣପୁର ହାଇସ୍କୁଲର ଆଶ୍ରମ ସୁଲଭ ବ୍ୟବସ୍ଥା ଏବଂ ସାଳିଆ ଘଣ୍ଟଶିଳାର ମନୋଜ୍ଞ ଦୃଶ୍ୟ ମୋତେ ଯେପରି କାବ୍ୟ ଜଗତକୁ ଆକୃଷ୍ଟ କରିନେଇଥିଲା । ଆଜି ସେଥିପାଇଁ ସାର୍‌ଙ୍କର ସ୍ମୃତି ଚାରଣ କରିବା ଅବସରରେ ବାଣପୁରର ସାଳିଆ ଘଣ୍ଟଶିଳା ବନଭୂମିର ପ୍ରତ୍ୟେକ ସୀମାକୁ ପଚାରିବାକୁ ଇଚ୍ଛା ହୁଏ । ହେ ହାତୀମୁଣ୍ଡା, ତୁମେ ସାର୍‌ଙ୍କ ସମ୍ପର୍କରେ ଆଜି କିଛି କହ । (ହାତୀମୁଣ୍ଡା ଏକ ଜଳାଶୟ) ହେ ଭତରାୟଣୀ ନାଗେଶ୍ୱର ଆମ୍ର କୁଞ୍ଜ, ତୁମେ ଆଜି ତୁମର ମୌନ ବ୍ରତ ଭଙ୍ଗ କର, ହେ ବାଣପୁର ବନ ବିଦ୍ୟାଳୟର ପ୍ରତ୍ୟେକ ପ୍ରାକ୍ତନ ଛାତ୍ର ଛାତ୍ରୀ, ତୁମେମାନେ ଆଜି କହ, ଜଣେ ସାଧାରଣ ଶିକ୍ଷକ କିପରି ତାଙ୍କର ଜିଜ୍ଞାସା, ସରଳତା, କର୍ତ୍ତବ୍ୟନିଷ୍ଠା ଫଳରେ ସମସ୍ତଙ୍କ ନିକଟରେ ବନ୍ଦନୀୟ ହୋଇ ପାରିଥିଲେ ତୁମେମାନେ ସମସ୍ତେ କହ ଅଭାବ ଅନାଟନ ମଧ୍ୟରେ, ଶିକ୍ଷକ ଜୀବନର ସମସ୍ତ ଯନ୍ତ୍ରଣା ମଧ୍ୟରେ ସେଦିନର ଶିକ୍ଷକ

ଶ୍ରୀଧର ଦାସଙ୍କର ଜୀବନ କିପରି ସ୍ୱର୍ଣ୍ଣଖଣ୍ଡ ପରି ପ୍ରଜ୍ୱଳିତ ହୋଇ ଉଠିଥିଲା । ଅଭାବ ଏବଂ ପରିବାରର ଜଞ୍ଜାଳ ମଧ୍ୟରେ ଜଣେ ସାଧାରଣ ଶିକ୍ଷକ ସାଧନା ବଳରେ କ୍ରମାଗତ ଭାବରେ ଉଚ୍ଚ ଶିକ୍ଷା ପାଇଁ ପରୀକ୍ଷା ପରେ ପରୀକ୍ଷା ଦେଇ ଚାଲିଥିଲେ । କାକଟପୁର ଅଞ୍ଚଳର ନାଉସିରା ଗ୍ରାମରେ ୧୯୦୧ ମସିହା ଅକ୍‌ଟୋବର ୪ ତାରିଖରେ ତାଙ୍କର ଜନ୍ମ । ପିତା ମଧ୍ୟ ଜଣେ ସେତେବେଳର ଟ୍ରେନିଂ ପ୍ରାପ୍ତ ପ୍ରାଥମିକ ବିଦ୍ୟାଳୟର ଶିକ୍ଷକ ଥିଲେ । ୧୮୬୬ ମସିହାର ନଅଙ୍କ ଦୁର୍ଭିକ୍ଷ ବେଳେ ସାମାନ୍ୟ କେତେ ଗୌଣୀ ଧାନ ଏବଂ ମାଣ୍ଡିଆ ବଦଳରେ ତାଙ୍କର ପୈତୃକ ଭୂ-ସମ୍ପତ୍ତି ବିକ୍ରି ହୋଇ ଯାଇଥିଲା । ୧୯୩୯ ମସିହାରେ ତାଙ୍କର ପିତାଙ୍କର ମୃତ୍ୟୁ ସମୟକୁ କିଛି ମକଦମି ସମେତ ପ୍ରାୟ ବାର ଏକର ଜମି ସେ ନିଜ ଉଦ୍ୟମରେ ଅର୍ଜ୍ଜନ କରି ପାରିଥିଲେ । ତାଙ୍କ ପିତାଙ୍କର ପ୍ରାଥମିକ ଶିକ୍ଷକ ଜୀବନ ଏବଂ ସେତେ-ବେଳର ଆମ ଓଡ଼ିଶାରେ ପ୍ରାଥମିକ ଶିକ୍ଷାର ବ୍ୟବସ୍ଥା ବିଚିତ୍ର ଥିଲା । ନିଜେ ସାର୍ ପ୍ରାଥମିକ ବିଦ୍ୟାଳୟରେ ପଢ଼ିବା ସମୟରେ ମଧ୍ୟ ଦେଶର ଅବସ୍ଥା ସେମିତି ସ୍ୱଚ୍ଛଳ ନ ଥିଲା । କମିଜ୍ ଗେଂଜି ପିନ୍ଧିବା ସେତେ ପ୍ରଚଳିତ ନଥିଲା । ୧୯୧୧ ମସିହାରେ ଡିସେମ୍ବର ମାସ ୧୨ ତାରିଖରେ ଭାରତର ଇଂରେଜ ସମ୍ରାଟ ପଞ୍ଚମ ଜର୍ଜଙ୍କର ରାଜ୍ୟାଭିଷେକ ଉତ୍ସବ ପାଳିତ ହୋଇଥିଲା । ପ୍ରାଥମିକ ବିଦ୍ୟାଳୟର ଛାତ୍ରମାନେ ପଞ୍ଚମ ଜର୍ଜ ଛବି ଲେଖା ଥିବା ମାଳି ଗୋଟିଏ ଲେଖାଏ ପିନ୍ଧି ସମ୍ରାଟଙ୍କର ଜୟଗାନ କରିବା ପାଇଁ ଗ୍ରାମ ଗ୍ରାମ ସଭା ସ୍ଥଳକୁ ଯାଇଥିଲେ । ସଙ୍ଗୀତର ମର୍ମ ଏହିପରି—

"ପଞ୍ଚମ ଜର୍ଜ ସମ୍ରାଟ ଆମ୍ଭମାନଙ୍କର
ହେ ଈଶ୍ୱର ଅତି ଯତ୍ନେ ତାଙ୍କୁ ରକ୍ଷାକର ।"

ନିମ୍ନ ପ୍ରାଥମିକ ବୃତ୍ତି ପରୀକ୍ଷାରେ ସାର୍ ଉତ୍ତୀର୍ଣ୍ଣ ହୋଇ ମାସିକ ୨ ଟଙ୍କା ବୃତ୍ତି ଲାଭ କରିଥିଲେ । ସାର୍ କାକଟପୁର ଭର୍ଣ୍ଣାକୁଲାର ସ୍କୁଲରେ ଭର୍ତ୍ତି ହେଲେ । ସେତେବେଳକୁ ତାଙ୍କ ମୁଣ୍ଡରେ ଚୁଟି ହାତରେ ରୁପା ଖଡ଼ୁ ଏବଂ ବେକରେ ମାଳି । ତାଙ୍କ ହେଡ୍ ପଣ୍ଡିତ ଥିଲେ ଦିବ୍ୟସିଂହ ମହାନ୍ତି । ସ୍କୁଲର ସ୍ୱତନ୍ତ୍ର ବୋର୍ଡ଼ିଂ ଘର ନଥିଲା । ସ୍କୁଲ ଘରେ ଦିନ ବେଳେ ପାଠ ପଢ଼ା ରାତିବେଳେ ବେଞ୍ଚ ଯୋଡ଼ି ଶୋଇବାକୁ ପଡ଼ୁଥିଲା । ବ୍ରାହ୍ମଣ ଏବଂ ଅବ୍ରାହ୍ମଣ

ଛାତ୍ରମାନେ ମିଳିମିଶି ଶିକ୍ଷକମାନଙ୍କ ପାଇଁ ଘେରଷେଇ କରି ଦେଉଥିଲେ । ସେତେବେଳେ କାକଟପୁର ମଙ୍ଗଳାଙ୍କର ସେବା କରିବା ପାଇଁ ସେଠାରେ କେତୋଟି ବେଶ୍ୟା ଘର ଥିଲା । ବେଶ୍ୟା ଘର ଝିଅମାନେ ମଙ୍ଗଳାଙ୍କ ମଣ୍ଡପରେ ନୃତ୍ୟଗୀତ କରୁଥିଲେ । ସେଥିପାଇଁ ସେମାନେ ଜମିବାଡ଼ି ଭୋଗ କରୁଥିଲେ । ବେଶ୍ୟା ଝିଅମାନଙ୍କୁ ପୁଅମାନଙ୍କ ସହିତ ପାଠ ପଢ଼ିବା ପାଇଁ ନିଷେଧ ଥିଲା । ସେତେବେଳେ ଦେଶରେ ସାକ୍ଷର ସଂଖ୍ୟା ଖୁବ୍ କମ୍ ଥିଲା । ସମ୍ଭବତଃ ଶତକର ପାଞ୍ଚ ଛଅ ହୋଇଥିବ ।

ଯାହାହେଉ ଶ୍ରୀଧର ବାବୁ ପୁରୀ ଜିଲ୍ଲା ସ୍କୁଲରେ ଭର୍ଣ୍ଣାକୁଲର ବୃତ୍ତି ପରୀକ୍ଷା ଦେଲେ । ଏହା ୧୯୧୫ ମସିହାର ଘଟଣା । ଏହି ପରୀକ୍ଷାରେ ତାଙ୍କୁ ବୃତ୍ତି ମିଳିଥିଲା, ବୃତ୍ତିର ପରିମାଣ ମାସିକ ପାଞ୍ଚ ଟଙ୍କା । ଏହାପରେ ବହୁ ଦ୍ୱନ୍ଦ୍ୱ ମଧ୍ୟରେ ତାଙ୍କର ବାପା ତାଙ୍କୁ ପୁରୀ ଜିଲ୍ଲା ସ୍କୁଲରେ ମାଟ୍ରିକ ପଢ଼ିବା ପାଇଁ ଭର୍ତ୍ତି କରାଇ ଦେଇଥିଲେ । କଷ୍ଟେ ମଷ୍ଟେ ପୁରୀ ଜିଲ୍ଲା ସ୍କୁଲରେ ଛଅଟି ବର୍ଷ ଅତିବାହିତ ହେଲା । ୧୯୨୨ ମସିହାରେ ମାଟ୍ରିକ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ସେତେବେଳେ ପାଟନା ବିଶ୍ୱବିଦ୍ୟାଳୟ ଅଧୀନରେ ଓଡ଼ିଶା ଡିଭିଜନରେ ସେ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରିଥିଲେ । ସେତେବେଳେ ଦୁଇଗୋଟି ପରୀକ୍ଷା ଦେବାକୁ ପଡୁଥିଲା । ପ୍ରଥମରେ ମାଟ୍ରିକ୍ୟୁଲେସନ ପରୀକ୍ଷା ଏବଂ ଦ୍ୱିତୀୟରେ ସ୍କୁଲ ଲିଭିଙ୍ଗ୍ ସାର୍ଟିଫିକେଟ ପରୀକ୍ଷା । ପୁରୀ ଜିଲ୍ଲା ସ୍କୁଲରେ ହିଁ ତାଙ୍କ ଜୀବନର ମୂଳଦୁଆ ପଡ଼ିଥିଲା । ସେହି ସମୟରେ ସେ ପଣ୍ଡିତ ଗୋପବନ୍ଧୁ ଦାସ, ଆଚାର୍ଯ୍ୟ ହରିହର ଦାସ, କବି ପଦ୍ମ ଚରଣ ପଟ୍ଟନାୟକ, ଜଗବନ୍ଧୁ ସିଂହ, ଲକ୍ଷ୍ମୀ ନାରାୟଣ ସାହୁ, ଲକ୍ଷ୍ମୀନାରାୟଣ ପଟ୍ଟନାୟକଙ୍କ ସଂସର୍ଗରେ ଆସି ଗଭୀର ଭାବରେ ପ୍ରଭାବିତ ହୋଇଥିଲେ । ମାଟ୍ରିକ ପରୀକ୍ଷା ପରେ ଉଚ୍ଚ ଶିକ୍ଷାର ପ୍ରବଳ ଆଗ୍ରହ ନେଇ ସେତେବେଳେ ଗୁଉଳିଆଗଞ୍ଜରେ ଗଢ଼ି ଉଠୁଥିବା ରେଭେନ୍ସା କଲେଜରେ ନାମ ଲେଖାଇଥିଲେ । ସେତେବେଳେ କଲେଜ ଶିକ୍ଷାରେ ମାସିକ ପାଞ୍ଚଟଙ୍କା ଖର୍ଚ୍ଚ ପଡୁଥିଲା, ତଥାପି ଅଧିକ ବ୍ୟୟ ଆଶଙ୍କାରେ ସେ ମଙ୍ଗଳାବାଗସ୍ଥିତ ଗୋଟାଏ କାଠ ଗୋଲାରେ ରହିଥିଲେ । ସେତେବେଳେ ଆଜି କାଲିର କଲେଜ ଛକ କେବଳ ବାଲୁକାପୂର୍ଣ୍ଣ ବାଉଁଶ ଜଙ୍ଗଲ । ଆଉ ରାଣୀହାଟ ଅଞ୍ଚଳ ଥିଲା ସପ୍ତପର୍ଣୀ ବଣ । ହଠାତ୍ କଲେଜ

ଛାଡ଼ି ମାସିକ ଟ ୨୦ ଙ୍କା ବୃତ୍ତିକୁ ସମ୍ବଳ କରି ସେ ଇଂଜିନିୟରିଙ୍ଗ୍ ପଢ଼ିବା ପାଇଁ ପାଟନା ଗ୍ଭଲିଗଲେ ମାତ୍ର ଇଂଜିନିୟରିଙ୍ଗ୍ ପାଠରେ ତାଙ୍କ ମନ ଲାଗିଲା ନାହିଁ । ତେଣୁ ଅଗତ୍ୟା ସେହି ପାଟନାରେ ଆଇ. ଏ. ଶ୍ରେଣୀରେ ନାମ ଲେଖାଇଲେ । କଲେଜ ବୃତ୍ତି, ଟିଉସନ ଏବଂ ଅନ୍ୟାନ୍ୟ ବ୍ୟକ୍ତିମାନଙ୍କର ସାମୟିକ ସାହାଯ୍ୟ, ଏହାହିଁ ତାଙ୍କ କଲେଜ ଜୀବନର ଥିଲା ପାଥେୟ । ଆଇ. ଏ ପଢ଼ିବା ସମୟରେ ଅଧ୍ୟାପକ ମାନେ ତାଙ୍କର ଅଧ୍ୟବସାୟ ଏବଂ ସରଳତାରେ ବିଶେଷ ମୁଗ୍ଧ ହୋଇ ଯାଉଥିଲେ । ତାଙ୍କର ପଡ଼ିଶା ସହପାଠୀମାନେ ପାଟନାରେ ସ୍ୱଚ୍ଛନ୍ଦରେ ଚଳୁଥିଲେ, ମାତ୍ର ଶ୍ରୀଯୁକ୍ତ ଦାସ ନିଜର ଆର୍ଥିକ ଅଭାବ ପ୍ରତି ସର୍ବଦା ସଚେତନ ଥିଲେ । ଥରେ ତାଙ୍କୁ ବିହାରୀ ସହପାଠୀ ଗଣ ପଗ୍ଭରିଲେ "ତୁମେ ବାବୁ ପାଟନା ସହରରେ କଅଣ ଦେଖିଲ" ଶ୍ରୀଧର ବାବୁ ଚୁପ୍‌ଗ୍ଭପ ରହିଥିଲେ । ସହପାଠୀ ମାନେ ବିଦ୍ରୂପ କରି କହିଲେ "ଆରେ, ତୁମେ 'ମିନିଆଁ' ବଜାର ଦେଖିଲ ନାହିଁ ।" ମିନିଆଁ ବଜାର ସେତେବେଳେ ବେଶ୍ୟାପଡ଼ାକୁ ବୁଝାଉଥିଲା । ଯାହା-ହେଉ ୧୯୨୪ ମସିହାରେ ଶ୍ରୀଧର ବାବୁ ଆଇ. ଏ ପାଶ୍ କରିଥିଲେ । ୧୯୨୮ ମସିହା ବେଳକୁ ପ୍ରାଇଭେଟ ଭବରେ ବି. ଏ. ପାଶ୍ କରିଥିଲେ । ଆଇ.ଏ. ପଢ଼ିବା ସମୟରେ ପାଟନାସ୍ଥିତ ସଦାକତ୍ ଆଶ୍ରମ କେତେଥର ଶ୍ରୀଧର ବାବୁ ବୁଲି ଯାଇଥିଲେ । ଖଦଡ଼ ଲୁଗାର ମାହାତ୍ମ୍ୟ ଏବଂ ଜାତୀୟ ଗୁରୁତ୍ୱ ସେହି ସମୟରେ ସ୍ୱାଧୀନତା ଆନ୍ଦୋଳନର ପ୍ରତୀକ ଥିଲା । ଏକଦା ସେ ଥରେ ସଦାକତ୍ ଆଶ୍ରମରୁ ଖଣ୍ଡିଏ 'ଖଦୀ' ଲୁଗା କିଣିଥିଲେ । ଏହା ବ୍ୟତୀତ ସେହି ସମୟର ଅନେକ ଜାତୀୟ କଂଗ୍ରେସ ନେତାଙ୍କର ପ୍ରଭବରେ ସେ ପ୍ରଭବିତ ହୋଇଥିବାର ଜଣାଯାଏ । ସମ୍ଭବତଃ ତାଙ୍କ ଜୀବନର ସରଳ ଚଳଣିର ମୂଳ ପ୍ରେରଣା ହେଉଛି ମହାତ୍ମା ଗାନ୍ଧୀଙ୍କର ବହୁ ପ୍ରଗ୍ଭରିତ ଗ୍ରାମ୍ୟ ଢାଂଗ୍ଭର ଜୀବନ ଧାର । ଫଳରେ କ୍ରମେ କ୍ରମେ ସ୍ୱାଧୀନ ମନୋବୃତ୍ତି ତାଙ୍କ ଚରିତ୍ରକୁ ଏକ ସ୍ୱାବଲମ୍ବୀ ଧାରରେ ଗଢ଼ି ତୋଳିଥିଲା । କେତେବେଳେ ମଫସଲ ମାଇନର ସ୍କୁଲରେ ଶିକ୍ଷକତା, କେତେବେଳେ ବଉଦ ଗଡ଼ଜାତରେ ଗ୍ଭକିରୀ । ଓଲସିଂହ ହାଇସ୍କୁଲରେ ଶିକ୍ଷକତା, ତତ୍‌ପରେ ବାଣପୁର ହାଇସ୍କୁଲରେ ଶିକ୍ଷକତା, ବାଣପୁରରେ ଅବସ୍ଥାନ ସମୟରେ ୧୯୪୨ ମସିହାରେ ପ୍ରାଇଭେଟ ଭବରେ ପାଟନା ବିଶ୍ୱବିଦ୍ୟାଳୟରୁ ଓଡ଼ିଆରେ ଏମ୍. ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା,

ବାଣପୁର ହାଇସ୍କୁଲ କର୍ତ୍ତୃପକ୍ଷଙ୍କର ବେଖାତିର ବ୍ୟବହାରରେ ବାଣପୁର ହାଇସ୍କୁଲରୁ ବିଦାୟ, ଖଣ୍ଡାମଉଳା ହାଇସ୍କୁଲରେ ଯୋଗଦାନ ଏବଂ ଜଗତସିଂହପୁର ହାଇସ୍କୁଲରେ ହେଡ୍‌ମାଷ୍ଟର ଭାବେ ଯୋଗଦାନ କରିବା ପରେ ଧାରାବାହିକ ଶିକ୍ଷକତାର ଏକ ଅବିସ୍ମରଣୀୟ କାହାଣୀ । ବାଣପୁର ହାଇସ୍କୁଲରେ ଶିକ୍ଷକତା କରିବା ସମୟରେ ସେଠାରେ ତାଙ୍କର ତିନୋଟି ପୁତ୍ର ଜାତ ହୋଇଥିଲେ ( ଜଗନ୍ନାଥ ୧୯୩୬, କୃଷ୍ଣ ୧୯୩୯, ରଘୁନାଥ ୧୯୪୨ ) । ତାଙ୍କର ଏକମାତ୍ର କନ୍ୟାର ଜନ୍ମ ( ୧୯୩୨ ) ହୋଇଥିଲା ବଉଦରେ । ଶ୍ରୀଧର ବାବୁ ଯେତେବେଳେ ଯେଉଁ ଶିକ୍ଷାନୁଷ୍ଠାନରେ ଯୋଗ ଦେଉଥିଲେ, ସେହି ଅନୁଷ୍ଠାନର ଉନ୍ନତି ଏବଂ ଅଗ୍ରଗତି କାର୍ଯ୍ୟରେ ନିଜକୁ ଗଭୀର ଭାବରେ ସାମିଲ କରି ଦେଉଥିଲେ । ବାଣପୁରରେ ଜମି ଖଣ୍ଡିଏ କିଣି ଚାରି ପାଞ୍ଚ ବଖରା ଚାଳ ଘର କରିଥିଲେ । ଜଗତସିଂହପୁରରେ ମଧ୍ୟ ଖଣ୍ଡିଏ ଜମି କିଣିଥିଲେ । ତାଙ୍କ ଜୀବନର ସୌନ୍ଦର୍ଯ୍ୟ ହେଉଛି, ସେ ସମସ୍ତ ପ୍ରକାର ପରିସ୍ଥିତି ସହିତ ନିଜକୁ ମିଶେଇ ନେଇ ପାରୁଥିଲେ । ମାତ୍ର ହାଇସ୍କୁଲ କର୍ତ୍ତୃପକ୍ଷମାନଙ୍କର ଯେଉଁ ହାମ୍‌ବଡ଼ା ଶିକ୍ଷକ ଅବମାନନା ନୀତି ସେହି ନୀତି ସହିତ ଶ୍ରୀଧର ବାବୁ ସାଲିସ କରିପାରୁ-ନଥିଲେ । ତଥାପି ବାଣପୁରରେ ଦୀର୍ଘ ଛଅ ବର୍ଷର ଶିକ୍ଷକତା ତାଙ୍କ ଜୀବନର ଯେତିକି ସ୍ମୃତି ସଂପଦ, ମୋର ତରୁଣ ଜୀବନ ପାଇଁ ତାଙ୍କର ସହାୟତା ଏବଂ ତାଙ୍କ ପରିବାରର ଆନ୍ତରିକତା, ତାହା ପରବର୍ତ୍ତୀ କାଳରେ ସମସ୍ତ ନୈରାଶ୍ୟ ଏବଂ ଦୁଃଖ ମଧ୍ୟରେ ଆଲୋକ ବର୍ତ୍ତିକା ସଦୃଶ କାର୍ଯ୍ୟ କରିଥିଲା । ଶ୍ରୀଧର ବାବୁ ବଉଦରେ ମାସିକ ବେତନ ପାଉଥିଲେ ଟ ୧୫୦, ଓଲସିଂହ ହାଇସ୍କୁଲରେ ପାଉଥିଲେ ମାସିକ ୧୨୦ ଟଙ୍କା, ମାତ୍ର ବାଣପୁରରେ ମାସିକ ବେତନ ପାଉଥିଲେ ମାତ୍ର ଟ ୩୦ । ଯେଉଁ ପରିସ୍ଥିତିର ଚାପରେ ଏବଂ ସ୍ୱାଭିମାନର ତାଡ଼ନାରେ ସେ ବାଣପୁର ହାଇସ୍କୁଲ ଚାକିରି ଛାଡ଼ି ଦେଇଥିଲେ, ଠିକ୍ ଅନୁରୂପ ପରିସ୍ଥିତିରେ ସେ ଜଗତସିଂହପୁର ହାଇସ୍କୁଲ ଶିକ୍ଷକତାରେ ଜଳାଞ୍ଜଳି ଦେଇଥିଲେ । ଜଗତସିଂହପୁର ଶିକ୍ଷକତା ପରେ ସେ କଟକ ଜିଲ୍ଲାର ଚକାଗୁଆ ହାଇସ୍କୁଲକୁ ମାତ୍ର କେତେଦିନ ପାଇଁ ଯାଇଥିଲେ । ଏକ ନିର୍ମାଖୀ ନିରଳସ ଶିକ୍ଷକ ଜୀବନର ସ୍ମୃତିକୁ ପଛରେ ପକାଇ ଶ୍ରୀଧର ବାବୁ କଟକ ସ୍ଥିତ ଖ୍ରୀଷ୍ଟ କଲେଜରେ ୧୯୪୮ ମସିହାରେ ଓଡ଼ିଆ ଅଧ୍ୟାପକ ଭାବରେ ଯୋଗ

ଦେଲେ ଏବଂ ଦୀର୍ଘ କୋଡ଼ିଏ ବର୍ଷର ସଫଳତା ପୂର୍ଣ୍ଣ ନିଃସ୍ୱାର୍ଥପର ଅଧ୍ୟାପନା ପରେ ୧୯୬୮ ମସିହାରେ ସେହି କଲେଜରୁ ଅବସର ନେଇ-ଥିଲେ । ହାଇସ୍କୁଲରେ ଶିକ୍ଷକତା ହେଉ କିମ୍ବା କଲେଜରେ ଅଧ୍ୟାପକତ୍ୱ ହେଉ, ଶ୍ରୀଯୁକ୍ତ ଦାସଙ୍କର ବୃତ୍ତିଗତ ବିବିଧତା ମଧ୍ୟରେ ତାଙ୍କର ଗୋଟିଏ ମାତ୍ର ଭାବମୂର୍ତ୍ତି ଦେଖିବାକୁ ମିଳେ, ତାହା ହେଉଛି ତାଙ୍କର ଜ୍ଞାନ ଆହରଣ ପ୍ରବଣତା ଏବଂ ଶିକ୍ଷାଦାନ କୁଶଳତା । ଜ୍ଞାନ ଆହରଣ ଏବଂ ଶିକ୍ଷାଦାନ ନିଶ୍ଚିତ ଭାବରେ ଏକ ସାଂସ୍କୃତିକ ବ୍ୟକ୍ତିତ୍ୱର ବଳିଷ୍ଠ ପ୍ରତିବିମ୍ବନ । ଏହି ପ୍ରତିବିମ୍ବନର ଏକ ମୁକ୍ତ ଆଲୋକ ରେଖା ହେଉଛି ତାଙ୍କର ସାରସ୍ୱତ ସାଧନା ଏବଂ ସାରସ୍ୱତ ଅଭିନିବେଶ । ଅଧ୍ୟାପକ ଶ୍ରୀଧର ଦାସ ତାଙ୍କର ଅଗଣିତ ଛାତ୍ରଛାତ୍ରୀଙ୍କ ନିକଟରେ ଅବଶ୍ୟ ପୂଜ୍ୟ, ମାତ୍ର ଶ୍ରୀଯୁକ୍ତ ଦାସଙ୍କର ସମଗ୍ର ଭାବମୂର୍ତ୍ତି ମୋ ପାଖରେ ସର୍ବଦା ବନ୍ଦନୀୟ ସେ ମୋ ପାଖରେ ଏକ ମହାନ୍ କିମ୍ବଦନ୍ତୀର ପୁରୁଷ ଏବଂ ପରମ୍ପରାର ପୌରୁଷ । ପୂର୍ବତନ ଗଡ଼ଜାତ ରଣପୁର ଅନ୍ଧାରି ମୂଲକରୁ ମାଇନର ପାଶ୍ କରିବା ପରେ ମୁଁ ବାଣପୁର ହାଇସ୍କୁଲରେ ପାଦ ନ ଦେଲା ପର୍ଯ୍ୟନ୍ତ ସାର୍‌ଙ୍କୁ ସ୍ୱ ଚକ୍ଷୁରେ ଦେଖି ନଥିଲି । ହୁଏତ ଶୁଣାଶୁଣିରେ ତାଙ୍କର ଶିକ୍ଷକ– ପୌରୁଷ ମୋ ପାଖରେ ସେତେବେଳେ ଏକ ଉପଦ୍ୱୀପର ଆଶ୍ଚର୍ଯ୍ୟ ସଦୃଶ ଅବୋଧ୍ୟ ଥିଲା । ଏହି ଅବସରରେ ଏଠାରେ ଆଉ ଏକ ଘଟଣା ଉଲ୍ଲେଖ ନକରି ରହିପାରୁ ନାହିଁ, ତାହା ହେଉଛି ମୋର ଅଗ୍ରଜ ପଣ୍ଡିତ ନାରାୟଣ ମହାପାତ୍ର ବାଣପୁର ହାଇସ୍କୁଲରେ ସଂସ୍କୃତ ଶିକ୍ଷକ ଭାବରେ ସମ୍ଭବତଃ ୧୯୩୫ ମସିହାରୁ ଯୋଗ ଦେଇ ସାରିଥିଲେ । ତେଣୁ ମୋର ମାଇନର ପାଠ ଶେଷ ହେବା ପରେ ଭାଇନାଙ୍କ ତତ୍ତ୍ୱାବଧାନରେ ବାଣପୁର ହାଇସ୍କୁଲରେ ମୋର ପଢିବା ବ୍ୟବସ୍ଥା ହୋଇଥିଲା । ପ୍ରଥମତଃ ସାରା ଓଡ଼ିଶାରେ ୧୯୪୦ ମସିହା ବେଳକୁ ବାଣପୁର ହାଇସ୍କୁଲ ସେତେବେଳେ ଦ୍ୱିତୀୟ ସତ୍ୟବାଦୀ ସ୍କୁଲ ସଦୃଶ ଏକ ଭାବମୂର୍ତ୍ତି ସୃଷ୍ଟି କରିପାରିଥିଲା ଏବଂ ଉତ୍କଳମଣିଙ୍କର ଆଦର୍ଶରେ ଅନୁପ୍ରାଣିତ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କର ପରିକଳ୍ପନା, ଭାବପ୍ରବଣତା ଏବଂ ତୀବ୍ର ଜାତୀୟତା ଏହି ଅନୁଷ୍ଠାନର ଥିଲା ସମଗ୍ର ପ୍ରେରଣା । ତଥାପି ସେହି ଯୁଗରେ ସ୍ଥାପିତ କେଉଁ କେଉଁ ହାଇସ୍କୁଲର ଶିକ୍ଷକ ଏବଂ ଶିକ୍ଷକମାନେ ମଧ୍ୟ ଛାତ୍ର ଛାତ୍ରୀଙ୍କ ପାଇଁ

ଆକର୍ଷଣ ସୃଷ୍ଟି କରି ପାରିଥିଲେ । ବାଣପୁର ହାଇସ୍କୁଲର ଶିକ୍ଷକ ଗୋଷ୍ଠୀ ସେତେବେଳେ ଓଡ଼ିଶାରେ ଶିକ୍ଷାର୍ଥୀମାନଙ୍କ ମଧ୍ୟରେ ଜାତୀୟ ପ୍ରେରଣା ସୃଷ୍ଟି କରି ପାରିଥିଲେ ବୋଲି ଜଣାଯାଏ । ଏଥିରେ ଶିକ୍ଷକମାନଙ୍କର ସାମୂହିକ ଉଦ୍ୟମ, ନିଷ୍ଠା ଯେତିକି ସହାୟକ ଥିଲା, ଶ୍ରୀଧର ଦାସ ଏବଂ ପଣ୍ଡିତ ନାରାୟଣ ମହାପାତ୍ର, ଶ୍ରୀଯୁକ୍ତ ଜଗନ୍ନାଥ ମହାପାତ୍ର ଏବଂ ଶ୍ରୀଯୁକ୍ତ ବିଶ୍ୱନାଥ ଶତପଥୀ ଏବଂ ବାମନ ଚରଣ ଦାସଙ୍କର ଶିକ୍ଷକ ଏବଂ ଛାତ୍ର ଜୀବନର ନିୟାମକ ଭବରେ ବେଶ୍ ସୁନାମ ଥିଲା ।

ସ୍କୁଲରେ ଏବଂ ସାଧାରଣ ଜୀବନରେ ଶ୍ରୀଯୁକ୍ତ ଶ୍ରୀଧର ଦାସଙ୍କର ଅଧ୍ୟବସାୟ, କର୍ତ୍ତବ୍ୟ ସଚେତନତା ସମ୍ଭବତଃ ସମସ୍ତଙ୍କର ପ୍ରଶଂସା ଦାବି କରୁଥିଲା । ଶ୍ରେଣୀ ଗୃହରେ ପାଠ ପଢ଼ାଇବାର ଚମତ୍କାରିତା, ଇଂରେଜୀ, ଗଣିତ ଏବଂ ଓଡ଼ିଆ ସାହିତ୍ୟରେ ତାଙ୍କର ଦକ୍ଷତା ଉଚ୍ଚକୋଟୀର । ଶିକ୍ଷକ ଶ୍ରୀଧର ଦାସ ହଠାତ୍ କିପରି ସମଗ୍ର ଓଡ଼ିଶାରେ ଓଡ଼ିଆ ବ୍ୟାକରଣର ନବଯୁଗର ପ୍ରବର୍ତ୍ତକ ଭବରେ ପରିଚିତ ହେଲେ । ଏହାର ଏକମାତ୍ର କାରଣ ହେଉଛି ଉଭୟ ଶ୍ରୀଯୁକ୍ତ ଦାସ ଏବଂ ପଣ୍ଡିତ ନାରାୟଣ ମହାପାତ୍ରଙ୍କର ମଣିକାଞ୍ଚନ ସଂଯୋଗ । ଉଭୟେ ଏକ ପ୍ରାଣ ଏକ ମନରେ ଘଣ୍ଟା ଘଣ୍ଟା ବସି ଗୋଟାଏ ପରେ ଗୋଟାଏ ବ୍ୟାକରଣ ପାଣ୍ଡୁଲିପି ପ୍ରସ୍ତୁତ କରୁଥିବାର ଦୃଶ୍ୟ ମୁଁ ନିଜ ଆଖିରେ ଦେଖିଛି । ଉଭୟଙ୍କର ମିଳିତ ଉଦ୍ୟମ ଏବଂ ସାଧନାର ପରିଣତି ହେଲା ଲଘୁ-ବ୍ୟାକରଣ, ମଧ୍ୟ ବ୍ୟାକରଣ ଏବଂ ସର୍ବସାର ବ୍ୟାକରଣ । ଏହି ବ୍ୟାକରଣ ଗୁଡ଼ିକ ବିଭିନ୍ନ ପର୍ଯ୍ୟାୟ ପାଇଁ ଉଦ୍ଦିଷ୍ଟ ଥିଲା । ଏହିପରି ଶିକ୍ଷକତା ଏବଂ ଅଧ୍ୟାପକତ୍ୱରେହିଁ ଶ୍ରୀଧର ଦାସଙ୍କର ଜୀବନର ସ୍ୱପ୍ନ, ପ୍ରସ୍ତୁତି, ସାଧନା ଏବଂ ସିଦ୍ଧିର ଚୌହଦୀ ଏଇତ କାଲିପରି ଲାଗୁଛି । ୧୯୪୨ ମସିହାରେ ବାଣପୁର ହାଇସ୍କୁଲରୁ ପୁରୀ ଜିଲ୍ଲା ସ୍କୁଲ କେନ୍ଦ୍ରରେ ବାର୍ଷିକ ମାଟ୍ରିକ ପରୀକ୍ଷା ଦେଇଥିଲି । ମୋର ସହାଧ୍ୟାୟୀ ମାନଙ୍କ ମଧ୍ୟରେ ଗଣେଶ୍ୱର ପ୍ରହରାଜ, ଅନନ୍ତ ରଥ, ରାଧାନାଥ ରଥ ପ୍ରଭୃତିଙ୍କ ନାମ ମନେ ପଡ଼ୁଛି । ଆମ ମଧ୍ୟରେ ଅନନ୍ତ ରଥଙ୍କ ଘର ବାଣପୁର ହାଇସ୍କୁଲ ପାଖ ଗ୍ରାମ ଶ୍ରୀନିବାସପୁର । ତାଙ୍କର ଆର୍ଥିକ ଅବସ୍ଥା ଆଦୌ ସ୍ୱଚ୍ଛଳ ନ ଥିଲା । ରାଧାନାଥ ଘର କଟକ ଫୁଲନଖରା ପାଖ ନର୍ଚ୍ଛିପୁର ଗ୍ରାମ ଏବଂ ଗଣେଶ୍ୱରଙ୍କ

ଘର ବାଣପୁର ବାଲୁଗାଁ ପାଖ ନିମିଷତା । ମୋର ମନେ ପଡ଼ୁଛି ସାର୍ ଏହି କେତେ ଜଣ ଛାତ୍ରଙ୍କୁ ବିଶେଷ ଭଲ ପାଉଥିଲେ ଏବଂ ସ୍କୁଲବେଳାକୁ ମିଶାଇ ସକାଳ ସନ୍ଧ୍ୟାରେ ମଧ୍ୟ ମାଟ୍ରିକ ପରୀକ୍ଷାର୍ଥୀ ମାନଙ୍କୁ ଅତିରିକ୍ତ କୋଚିଙ୍ଗ୍ ଦେଉଥିଲେ । ସାର୍‌ଙ୍କ ହାତରେ ଖଣ୍ଡେ ଟେଷ୍ଟପେପର । ଆମ କେତେ ଜଣଙ୍କୁ ବଗବର ଇଂରେଜୀ, ଗଣିତ ଓଡ଼ିଆ ସଂସ୍କୃତ ପାଠରେ ବାନ୍ଧି ଦେଉଥିଲେ । ସାର୍‌ଙ୍କ ଶିକ୍ଷକ ଜୀବନଟା କେମିତି ଏକାଧାରରେ ଶିକ୍ଷା, ଦୀକ୍ଷା, ସାମାଜିକ, ଗ୍ରାମ୍ୟ ଲୋକଙ୍କ ସେବାରେ ଏକ ସ୍ୱୟଂସମ୍ପୂର୍ଣ୍ଣ ଭବମୂର୍ତ୍ତି ଭବରେ ପର୍ତ୍ତି ଉଠିଥିଲା । ବାଣପୁର ହାଇସ୍କୁଲର ଉଦ୍ଦୀପ୍ତ ଜାତୀୟ ଚେତନାର ପ୍ରସାରଣଶୀଳ ପାଠ୍ୟକ୍ରମରେ ଶ୍ରେଣୀଗୃହର ନିୟମିତ ତର୍କ ସଭକୁ ଉଚ୍ଚସ୍ଥାନ ଦିଆ ଯାଇଥିଲା । ସାର୍ ଯେତେବେଳେ ଆମ ଶ୍ରେଣୀରେ 'ଡିବେଟିଙ୍ଗ' ସୋସାଇଟିରେ ଠିଆ ହୋଇ ବକ୍ତୃତା ଦେଉଥିଲେ । ସେଥିରେ ଯେତେ ଅମାନିଆ ଚଗଲା ପିଲା ମଧ୍ୟ ତାଙ୍କୁ ଶୁଣିବା ପାଇଁ ବେଞ୍ଚରେ ବସି ପଡ଼ୁଥିଲା । ସେଥିପାଇଁ ସ୍କୁଲର ଅନ୍ୟାନ୍ୟ ଶିକ୍ଷକ ଯଥା ଦୁର୍ଗାଚରଣ ମହାନ୍ତି ( ଘର ଡେଲଙ୍ଗ ) ଲକ୍ଷ୍ମୀକାନ୍ତ ମହାନ୍ତି ( ଘର ଭଦ୍ରଖ ) ବିଶ୍ୱନାଥ ଶତପଥୀ ( ଘର ଖୋର୍ଦ୍ଧା—ଟାଙ୍ଗିଆ ପଡ଼ା ) ଜଗନ୍ନାଥ ମହାପାତ୍ର ( ଘର କୁମାରଙ୍ଗ ) ମାନଙ୍କ ମଧ୍ୟରେ ସାର୍‌ଙ୍କ ପାଇଁ ଯଥେଷ୍ଟ ଖାତିର ଏବଂ ସମ୍ମାନ ଥିଲା । ସାର୍‌ଙ୍କର ଶୈକ୍ଷିକ ବ୍ୟକ୍ତିତ୍ୱର ଏକ ଅସଲ ଦିଗନ୍ତ ହେଉଛି ତାଙ୍କର ଗାନ୍ଧୀଧର୍ମୀ ସରଳତା । ମୋର ମନେ ପଡ଼ୁଛି ସାର୍ ସେତେ-ବେଳେ ଖଦଡ଼ ପିନ୍ଧୁଥିଲେ । ତାଙ୍କ ବେଶଭୂଷାର ଏକ ପ୍ରଧାନ ଆକର୍ଷଣ ଯୋଗ୍ୟ ଥିଲା ତାଙ୍କର ଖଣ୍ଡେ କଳା କୋଟ୍ । ତାଙ୍କର ଲମ୍ବା ଲମ୍ବା ଚେହେ-ରକୁ 'କଳାକୋଟ୍' ଟା ଯାଚ୍ଛା ମାନୁଥିଲା । ସାର୍‌ଙ୍କର ଛାତ୍ରବତ୍ସଳତା ଏ ଯୁଗରେ ଦୁର୍ଲ୍ଲଭ । ସ୍କୁଲ ନିକଟବର୍ତ୍ତୀ ଗାଁ ଗଣ୍ଡା ଯଥା କୁମାରଙ୍ଗ, ଋଣୀପଡ଼ା, ତୁମୁରପୁଟ, ପୁଞ୍ଜିଆମା, ତୁଳସୀପୁର, ଅଖୁରେଜ ପୁର, ଭୀମପୁର, ଶ୍ରୀନିବାସ ପୁର, ପାଳସାହି ଏବଂ ଖୋଦ ବାଣପୁର ସହରଅଞ୍ଚଳରେ ସାର୍ ବେଶ୍ ଲୋକପ୍ରିୟ ଥିଲେ । ଶିକ୍ଷକତା ବ୍ୟତୀତ ତାଙ୍କ ଜୀବନରେ ସାହିତ୍ୟ— ପ୍ରୀତି ତ ତାଙ୍କୁ ଉବେଇ ଟୁବେଇ ବାନ୍ଧି ରଖିଥିଲା । କିନ୍ତୁ ଉଲ୍ଲେଷ ଗୋଟାଏ ଉଲ୍ଲେଖ ଯୋଗ୍ୟ କୃତିତ୍ୱ ଥିଲା, ତାହା ହେଉଛି ତାଙ୍କର 'ହୋମିଓପାଥି' ଚିକିତ୍ସା । ବାଣପୁର ହାଇସ୍କୁଲ ସାମନା ଲମ୍ବି ଯାଇଥିବା ଧୂଳି ଧୂସରିତ ନାଲି ରାସ୍ତାକୁ ଲାଗି ସାର୍‌ଙ୍କର

ସେହି ଆଶ୍ରମ ସ୍କୁଲର ଗ୍ରନ୍ଥାଗାର, ସାର୍ ତାଙ୍କ ଘର ବରଣ୍ଡାରେ ବସିଥିବେ, ତାଙ୍କୁ ଘେରି ଛାତ୍ର ଏବଂ ଗାଉଁଲି ଲୋକ କେତେ ଜଣ ଅପେକ୍ଷା କରିଥିବେ । ସମସ୍ତଙ୍କର ହୋମିଓପାଥି ଔଷଧ ଦରକାର । 'ହୋମିଓପାଥି'ର 'ନକ୍ସ' ବେଲଡନା, ଗ୍ରଇନା, ବ୍ରାଓନିଆ, ଏକୋନାଇଟ୍, ପଲସେଟିଲ, ଲାଇକୋପୋଡ଼ିୟମ, ପ୍ରଭୃତି ଔଷଧର ନାମ ସାର୍‌ଙ୍କ ମୁହଁରୁ ହଷ୍ଟେଲ ଛାତ୍ରମାନେ ଶୁଣି ଶୁଣି ମନେ ରଖି ହୋମିଓପାଥି ଚିକିତ୍ସା ପ୍ରତି ଆକୃଷ୍ଟ ହେଉଥିଲେ । ଯିବା ଆସିବା ରାସ୍ତାରେ ସାର୍‌ଙ୍କୁ କେହି ରୋଗୀ ପଚାରିଲେ, ସେ ସଙ୍ଗେ ସଙ୍ଗେ ତାକୁ ଔଷଧ ବତାଇ ଦେଉଥିଲେ । ସାର୍ କେବେ ଟିଉସନର ପକ୍ଷପାତୀ ନଥିଲେ । ଅଥଚ 'ଟିଉସନ'ର ଯେଉଁ ପରିଶ୍ରମ, ଜଞ୍ଜାଳ ଏବଂ ତତ୍‌ପରତା ତାଙ୍କୁ ଛାଡ଼ି ନଥିଲା । କାରଣ ଶ୍ରେଣୀ ବାହାରେ ଶ୍ରେଣୀର ଛାତ୍ରମାନଙ୍କର ପାଠ ପଢା ତତ୍ତ୍ୱାବଧାନ କରିବାରେ ସାର୍ ଥିଲେ ଅଗ୍ରଣୀ । ଇସ୍କୁଲର ଜଣେ ଅଧେ ଶିକ୍ଷକଙ୍କ ମନରେ ସେଥିପାଇଁ ଈର୍ଷା ଉଙ୍କି ମାରୁଥିଲା । ଫଳରେ ବେସରକାରୀ ଶିକ୍ଷାନୁଷ୍ଠାନ ମାନଙ୍କରେ ଯାହା ଘଟିବା କଥା, ସେମିତି କେତେ କଥା ଘଟିଥିଲା । ବେସରକାରୀ ଅନୁଷ୍ଠାନର କର୍ତ୍ତୃପକ୍ଷ ଯେବେ ଚୁଗୁଲି ଶୁଣନ୍ତି, ଏବଂ ଜଣେ ଅଧେ କର୍ମଚାରୀଙ୍କ ତୋଷାମୋଦରେ ଭାସି ଯାଆନ୍ତି ତାହାହେଲେ ଜାଣିବାକୁ ହେବ ଅନୁଷ୍ଠାନ ପକ୍ଷରେ ଏହା ଆଦୌ ମଙ୍ଗଳକର ନୁହେଁ । ସବୁ ଯୁଗରେ ସବୁ କାଳରେ ସବୁ ଅନୁଷ୍ଠାନରେ ଖୋଷାମଦିଆ ପ୍ରଶଂସକମାନଙ୍କର ଆତଙ୍କାତ ହୁଏ । ବାଣପୁର ହାଇସ୍କୁଲରେ କର୍ତ୍ତୃପକ୍ଷ ହୁଏତ ଅନିଚ୍ଛାକୃତ ଭାବରେ ଏମିତି ଘଟଣାକୁ ପ୍ରଶ୍ରୟ ଦେଇଥିଲେ । ତଥାପି ସାମଗ୍ରିକ ଭାବରେ ଦେଖିଲେ ବାଣପୁର ହାଇସ୍କୁଲର ସେତେବେଳର ଶିକ୍ଷକମାନଙ୍କର ଜାତୀୟ ମମତାବୋଧ ଶିକ୍ଷାନୁରାଗ ଏବଂ ଛାତ୍ର ବତ୍ସଳତା ଓଡ଼ିଶାର ବହୁ ଦୂରଦୂରାନ୍ତରୁ ଛାତ୍ରମାନଙ୍କୁ ଆକୃଷ୍ଟ କରିଥିଲା । ଏପରି ସୁନାମରେ ସାର୍‌ଙ୍କର ଅବଦାନ କମ୍ ନଥିଲା । ମାଟ୍ରିକ କ୍ଲାସରେ ସାର୍‌ଙ୍କ ସହିତ ମୋର ଏବଂ ଅନ୍ୟାନ୍ୟ ଛାତ୍ରମାନଙ୍କର ସଂପର୍କ ଏହିପରି ଶିକ୍ଷାଲାଭ, ଭାବ ପ୍ରବଣତା, ଅତୁଟ ଭକ୍ତି ଏବଂ ସରଳ ଜୀବନର ସମ୍ମୋହନତା ମଧ୍ୟରେହିଁ ଗଢି ଉଠିଥିଲା ।

୧୯୪୨ ମସିହାରେ ମେ'ମାସ ବେଳକୁ ପାଟନା ବିଶ୍ୱବିଦ୍ୟାଳୟର ମାଟ୍ରିକ ପରୀକ୍ଷା ଫଳ ପ୍ରକାଶିତ ହେଲା । ଆମ ସ୍କୁଲର ପରୀକ୍ଷା ଫଳ

ମଧ୍ୟ ଆଶାନୁରୂପ ହୋଇଥିଲା, ଆମ୍ଭେ ଦୁଇଗ୍ରରିଜଣ ସେକେଣ୍ଡ ଡ଼ିଭିଜନ ପାଇଥିଲୁ । ଏବେ ଓଡ଼ିଶାରେ ସେକଣ୍ଡାରୀ ବୋର୍ଡ ପରୀକ୍ଷାରେ ଯେତେ ଛାତ୍ରଛାତ୍ରୀ ଫାଷ୍ଟ ଡ଼ିଭିଜନରେ ଉତ୍ତୀର୍ଣ୍ଣ ହେଉଛନ୍ତି, ସେତେବେଳେ ସମଗ୍ର ଓଡ଼ିଶାରେ ପାଟଣା ବିଶ୍ୱବିଦ୍ୟାଳୟ ଅଧୀନରେ ମାଟ୍ରିକ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଉଥିବା ମୋଟ ଛାତ୍ରଛାତ୍ରୀଙ୍କ ସଂଖ୍ୟା ସମ୍ଭବତଃ ତାହାଠାରୁ ଢେର କମ୍ ଥିଲା । ସୁତରାଂ ସେତେବେଳେ ତୃତୀୟ ଡ଼ିଭିଜନରେ ପାଶ୍ କରିବାରେ ମଧ୍ୟ ଗୌରବ ଥିଲା । ସେକେଣ୍ଡ ଡ଼ିଭିଜନରେ ମୁଁ ଉତ୍ତୀର୍ଣ୍ଣ ହେବାର ଖବର ସାର୍ ପାଇବା ମାତ୍ରେ ମୋତେ ଜଣାଇ ଥିଲେ ଏବଂ ଏହାପରେ ମୁଁ କେଉଁଠି କିମିତି ଆଉ ଦୁଇବର୍ଷ ପଢି ପାରିବି, ସେଥିପାଇଁ ମୋ ବଡ଼ଭାଇଙ୍କ ସହିତ କଥାବାର୍ତ୍ତା କରିଥିଲେ । ମୁଁ ସେତେବେଳକୁ ଆମ ଗାଁଆଁରେ ଥାଏ' କାରଣ ପରୀକ୍ଷା ଦେଇ ସାରିବା ପରେ ସାଧାରଣତଃ ଛାତ୍ରମାନେ ଗାଁକୁ ଗ୍ଲଲିଯାଇଥାନ୍ତି । ତେବେ ସେତେବେଳକୁ ସାର୍‌ଙ୍କ ସଂପର୍କରେ ମୋର ଯେଉଁ ଧାରଣା ହୋଇଥିଲା ତେଣୁ ଏଇ କାଲି ପରି ଲାଗୁଛି, ସାର୍ ମୋ ପାଇଁ କଟକରେ ଜଣେ ଅଧେ ଭଦ୍ରଲୋକଙ୍କୁ ସୁପାରିଶ-ମୂଳକ ପତ୍ର ଲେଖିଦେଲେ । ମୋ ବଡ଼ ଭାଇଙ୍କୁ ( ପଣ୍ଡିତ ନାରାୟଣ ମହାପାତ୍ର ) ବରବର କହିଲେ ମୋତେ କଟକ ପଠାଇଦେବା ପାଇଁ । କଟକ ରେଭେନ୍‌ସା କଲେଜରେ ନାମ ଲେଖାଇଲି ଆଇ. ଏ. ପଢିବା ପାଇଁ ତା' ପରେ ସେଠି ବି. ଏ. ଅନର୍ସ, ଏମ୍. ଏ. ପଢିଲି । କଟକରେ କେଉଁ ମେସ୍, କେଉଁ ଭଡ଼ାଘର କେଉଁ ବନ୍ଧୁଘର କେଉଁ ହଷ୍ଟେଲରେ ମୋର ଛାତ୍ର ଜୀବନ ପ୍ରସାରିତ ହୋଇଥିଲା, ଏହା ସବୁ ଆଉ ଏକ କାହାଣୀର ସ୍ମୃତି । ତେବେ କ୍ରମେ କ୍ରମେ ସାର୍ ଏବଂ ତାଙ୍କ ପରିବାର ଏବଂ ତାଙ୍କ ପୁଅ-ଝିଅଙ୍କ ସହିତ ମୋର ସ୍ମୃତି ମଧୁର ସୁଖ ଦୁଃଖର ସଂପର୍କ– ଲତିକାଟି ପଲ୍ଲବିତ ହୋଇ ଉଠିଥିଲା । ସ୍କୁଲର ଛାତ୍ରାବସ୍ଥାରେ ମୁଁ ସାର୍‌ଙ୍କର ଯେତିକି ନିକଟ ହୋଇଥିଲି, କଟକରେ ରହି ରେଭେନ୍‌ସା କଲେଜରେ ପଢିବା ସମୟରେ ଆହୁରି ନିକଟତର ହେଲି ଏବଂ ୧୯୪୮ ମସିହାରେ ଓଡ଼ିଆରେ ଏମ୍. ଏ. ପାଶ୍ କରିବା ପରେ ନିକଟତମ ହୋଇଥିଲି । ଏହାର ଏକମାତ୍ର କାରଣ ହେଲା, ମୋର ବଡ଼ଭାଇ ବାଣପୁର ହାଇସ୍କୁଲର ସଂସ୍କୃତ ପଣ୍ଡିତ ଥାଆନ୍ତି ଏବଂ ହାତୀମୁଣ୍ଡା ପୋଖରୀ ହୁଡ଼ାରେ ସ୍କୁଲର ଏକ ଘରଘରେ ରହୁଥିଲେ । ତେଣୁ କଲେଜରେ ଛୁଟି ସମୟରେ ମୁଁ ଆମ ଗାଆଁକୁ

ନିଯାଇ ବଡ଼ଭାଇଙ୍କ ପାଖେ ରହୁଥିଲି । ସେଠାରେ ବଡ଼ଭାଇଙ୍କ ପରିବାର ରହୁଥିଲେ, ଭଉଜ ଏବଂ ଝିଅ଼ାରୀ ପୁତୁରମାନେ ବେଳେ ବେଳେ ମୋର ନନା ମଧ୍ୟ ଆମ ପାଖରେ ରହୁଥିଲେ । ମୋର ଏମିତି ଧାରଣା ହୋଇଥିଲା ଯେ ସାର୍ କେବଳ ତାଙ୍କର ସଂସାର ଏବଂ ପରିବାର ନେଇ ବ୍ୟସ୍ତ ନଥିଲେ, ମୋ ପରି ଛାତ୍ରମାନଙ୍କ ପାଇଁ ଏବଂ ଯୁବକମାନଙ୍କ ପାଇଁ ତାଙ୍କର ଅସୀମ ଦରଦ ଥିଲା, ଆବେଗ ଥିଲା ଏବଂ ଯେ କୌଣସି ଉତ୍ତମ କାର୍ଯ୍ୟରେ ସେ ନିଜକୁ ସାମିଲ କରିପାରୁଥିଲେ, ତାଙ୍କ ନିଜର ଆର୍ଥିକ ଉନ୍ନତି ପାଇଁ କଠୋର ପରିଶ୍ରମ କରୁଥିଲେ, ଶିକ୍ଷକ ଜୀବନର ଅଭାବ ଅନାଟନରେ କେବେ ଭାଙ୍ଗିପଡୁ ନଥିଲେ, ସ୍କୁଲରେ ଶିକ୍ଷକତା କରି ତାଙ୍କର ପୁଅଝିଅଙ୍କର ପଢ଼ାପଢ଼ିର ଯତ୍ନ ନେଇ ପାରୁଥିଲେ । ପ୍ରଥମେ ପ୍ରଥମେ ଇସ୍କୁଲ ଏବଂ ପରବର୍ତ୍ତୀ କାଳରେ କଲେଜ କାର୍ଯ୍ୟରେ ବେଶ୍ ଦୌଡ଼ି ପାରୁଥିଲେ । କାହିଁ କେବେ ସାର୍ କ୍ଲାନ୍ତି ବୋଧ କରିବାର ମୁଁ ଜାଣିପାରୁ ନଥିଲି । ଯେଉଁ ଅନୁଷ୍ଠାନରେ ପାଦ ଦେଉଥିଲେ, ତାହାରି ସେବାରେ ସେ ନିଜକୁ ସମର୍ପି ଦେଉଥିଲେ, ବଉଦ, ଓଲସିଂହ, ଜଗତସିଂହପୁର, କୋରୁଆ, କଟକ, ଏ ସମସ୍ତ ସ୍ଥାନ ଅପେକ୍ଷା ତାଙ୍କର ବାଣପୁର ରହଣୀ ସର୍ବାପେକ୍ଷା ପରବର୍ତ୍ତୀ ଜୀବନର ଭିତ୍ତିଭୂମିର ସ୍ମୃତିପୂର୍ଣ୍ଣ, ସ୍ୱପ୍ନ ମଧୁର ଏବଂ ତାଙ୍କ ଜୀବନର ବେଳାଭୂମିରେ ବାଣପୁରର ସାଳିଆ-ଘଣ୍ଟଶିଳା ଆଶ୍ରିତ ପ୍ରକୃତିର ନୂପୁର ଧ୍ୱନି ବରବର ଅନୁରଣିତ ହୋଇଥିଲା । ସେଥିପାଇଁ ତାଙ୍କର ସ୍ମୃତିଗ୍ରରଣ କରିବା ଅବସରରେ ମୋ ମନରେ ବାଣପୁରର ସେହି ଆଶ୍ରମ ସ୍କୁଲର ଶିକ୍ଷାଶ୍ରମ ପାଇଁ ଅନେକ ଆଲୋଡନ, ଅନେକ ଦରଦ ଏବଂ ବିଶେଷ ଯନ୍ତ୍ରଣା । ସେହି ବାଣପୁର ମାଟି ଉଦ୍ଦେଶ୍ୟରେ ପ୍ରଣତି ବାଢ଼ି କହିବାକୁ ଇଚ୍ଛା ହୁଏ, "ତୁମ ପାଇଁ ମୋର ପ୍ରୀତିଭରା ଶୁଭେଚ୍ଛା, ମୋର ସେହି ତାରୁଣ୍ୟର ଉଷାଲଗ୍ନରେ ମୁଁ ତୁମର ନିଟୋଳ, ହସ ହସ ମୁହଁ ନରମି ନରମି ଚେହେରା ପାଖରେ ନିଜକୁ ସମର୍ପି ଦେଇଥିଲି ପରା । ଏହା ଜଣାଶୁଣା କଥା ଯେ ସାର୍ ସେହି ସମୟରେ ଜଣେ ଲୋକପ୍ରିୟ ଶିକ୍ଷକ ଥିଲେ । ତାଙ୍କର ଶିକ୍ଷକ ସୁଲଭ ଗୁଣ ଯୋଗ୍ୟତା ଏବଂ ସରଳ ବ୍ୟବହାର ପ୍ରକୃତରେ ତାଙ୍କର ଏକମାତ୍ର ସାର୍ଟିଫିକେଟ । ଶିକ୍ଷକ ଭଳି ଜଣେ ଶିକ୍ଷକ । ପ୍ରାଚୀନ ଗୁରୁକୁଳର ପରମ୍ପରା ତାଙ୍କର ଶିକ୍ଷକ ଜୀବନରେ ପ୍ରତିଫଳିତ ହୋଇଥିଲା । ସେଥିପାଇଁ ଜଗତ୍‌ସିଂହପୁର ହାଇସ୍କୁଲର (ଶ୍ରୀକୃଷ୍ଣ ଏକାଡେମୀ)

ସେତେବେଳର କର୍ତ୍ତୃପକ୍ଷ ପୋଲିସ ସାହେବ ଶ୍ରୀକୃଷ୍ଣ ମହାପାତ୍ର ତାଙ୍କୁ ତାଙ୍କ ସ୍କୁଲର ପ୍ରଧାନ ଶିକ୍ଷକ ଭାବରେ ନିମନ୍ତ୍ରଣ କଲେ । ସାର୍ କିଛିଦିନ ସେଠାରେ ହେଡ଼ମାଷ୍ଟର ଭାବରେ କାର୍ଯ୍ୟ କରିଥିଲେ । ସାର୍ ଥାଆନ୍ତି ଜଗତ୍‌ସିଂହପୁରରେ । ତାଙ୍କ ପରିବାର ଥାଆନ୍ତି ବାଣପୁରରେ । ତାଙ୍କର ବସାଘର ଠିକ୍ ଜଗତ୍‌ସିଂହପୁର ବଜାର ରାସ୍ତା ଉପରେ ଅବସ୍ଥିତ ଥିଲା । ବସାଘର ପଛପଟେ ମାଛଗାଁ କେନାଲ । ସମଗ୍ର କଟକ ଜିଲ୍ଲାର ପଲ୍ଲୀ ସୌନ୍ଦର୍ଯ୍ୟ, ଗାଆଁ ଗହଳର ଆମ୍ବତୋଟା ବଉଳ ଭିଜା ମୁକ୍ତ ପବନ, ବର୍ଷକ ବାରମାସ କେନାଲ ପାଣି, ତାଳ ନାରୀକେଳ ଛାୟା ଶୀତଳ ମାଟିର ଆକର୍ଷଣ ଭାଷାରେ ପ୍ରକାଶ କରଯାଇ ନ ପାରେ । ଜଗତ୍‌ସିଂହପୁର ବଜାର ପାଖ ସେତେବେଳେ ବାଉଁଶ ଜଙ୍ଗଲରେ ପରିପୂର୍ଣ୍ଣ, ମେଲେରିଆର ପ୍ରକୋପ ସେମିତି ମଧ୍ୟ ଖୁବ୍ ବେଶୀ । ମଝିରେ ମଝିରେ ସାର୍ ମୋତେ ଚିଠି ଲେଖି ମୋର ପଢ଼ାପଢ଼ି କଥା ଏବଂ ଭଲ ମନ୍ଦ ବୁଝୁଥିଲେ । ୧୯୪୪ ମସିହା, ମୋର ଆଇ. ଏ. ପରୀକ୍ଷା ଏପ୍ରିଲ ମାସରେ ସରି ଯାଇଥାଏ । ପରୀକ୍ଷା ପରେ କଟକ ମେସ୍ ଛାଡ଼ି ମୁଁ ବାଣପୁରକୁ ମୋର ବଡ଼ ଭାଇଙ୍କ ପାଖକୁ ଯିବା କଥା । ହଠାତ୍ ସାର୍‌ଙ୍କର ଖଣ୍ଡିଏ ଚିଠି ପାଇଲି । ଗୋପାଳ, ତୁମର ତ ପରୀକ୍ଷା ସରିଲା । ବର୍ତ୍ତମାନ କିଛି ଦିନ ପାଇଁ ଜଗତ୍‌ସିଂହପୁର ହାଇସ୍କୁଲରେ ଆସି କାମ କଲେ ଭଲ ହୁଅନ୍ତା । ସାର୍‌ଙ୍କର ଚିଠି ଖଣ୍ଡିକ ପାଇ ସେଦିନ ମୋ ମନରେ ଯେଉଁ ଫୁର୍ତ୍ତି ଏବଂ ଉତ୍ସାହ, ତାହା ଏବେ ମନେ ପଡ଼ିଯାଉଛି । ଭାବିଲି, ହାଇସ୍କୁଲର ଗ୍ରୀଷ୍ମ ଅବକାଶ ହେଉ ହେଉ ଜୁନ୍ ମାସ । ଏଇଲେ ମାସ ଦେଢ଼ମାସ ଜଗତ୍‌ସିଂହପୁରରେ ମାଷ୍ଟ ଚାକିରୀ କରି ପାରିଲେ ଅନ୍ତତଃ ଚାକିରୀ ଅଭିଜ୍ଞତା ସହିତ କେତେଟା ଟଙ୍କା ମିଳନ୍ତା ଯେବେ ଟଙ୍କା କିଛି ବଂଚି ପାରିବ, ତାହା ହେଲେ ବି.ଏ. କ୍ଲାସରେ ନାମ ଲେଖା ପାଇଁ ସୁବିଧା ହୁଅନ୍ତା । ଆଉ ଆଗ ପଛ କିଛି ନଭାବି ଜଗତ୍‌ସିଂହପୁରରେ ଯାଇ ହାଜର ହେଲି । ଆଜିକାଲି କଟକ ଜଗତ୍‌ସିଂହପୁର ରାସ୍ତାରେ ପ୍ରତି ମୁହୂର୍ତ୍ତରେ କେତେ ବସ୍, ଟ୍ରକ୍, ଟ୍ରାକ୍‌ଟର, ସ୍କୁଟର ଛୁଟି ଚାଲିଛି । ପୁଣି ପାରାଦ୍ୱୀପକୁ ରେଳ ଲାଇନ୍ ପଡ଼ିଲାଣି । ସେତେବେଳେ ସେହି ନାଲିଗୋଡ଼ି, ଅଣଓସାରିଆ ରାସ୍ତା, ଆଉ ଏକମାତ୍ର ଯାନବାହନ କଟକ ମଟର ଆସୋସିସନ ବସ୍ । ଅବଶ୍ୟ ମାଛଗାଁ କେନାଲରେ ଲଞ୍ଚ ଏବଂ ଡଙ୍ଗା ଚାଲୁଥିଲା । ସାର୍ ମୋତେ କହିଲେ । ତୁମେ ମୋ ବସାରେ ରହିବ ।

ସ୍କୁଲରେ ଅଷ୍ଟମ ନବମ ଶ୍ରେଣୀରେ ଅଙ୍କ ଏବଂ ସାହିତ୍ୟ ପଢ଼ାଇବ ତୁମକୁ ମାସକୁ ଦରମା ଟ୫୫ଙ୍କା ମିଳିବ, ସେତେବେଳେ ୫୫ ଟଙ୍କା ମୋ ପାଇଁ ଯଥେଷ୍ଟ ଥିଲା । ପ୍ରଥମେ ମୁଁ ସାର୍‌ଙ୍କ ପାଖରେ ରହିଥିଲି । ସାର୍‌ଙ୍କ ପାଖରେ ସେତେବେଳେ ତାଙ୍କ ଝିଅ ବିଷ୍ଣୁ ରହୁଥିଲା । ସମ୍ଭବତଃ ସେ ସ୍କୁଲରେ ମାଇନର କ୍ଲାସରେ ପଢ଼ୁଥିଲା । ସାର୍‌ଙ୍କ କ୍ୱାଟର ପାଖରେ ବାଣପୁର ଅଚ୍ୟୁତଗଜପୁର ଗ୍ରାମର ଭଗୀରଥି ମିଶ୍ର ମେସ୍ କରି ରହୁଥିଲେ । ଭଗୀରଥି ମିଶ୍ରେ ସ୍କୁଲରେ ସଂସ୍କୃତ ପଢ଼ାଉଥିଲେ । ପରେ କିଛିଦିନ ପାଇଁ ପଣ୍ଡିତଙ୍କ ମେସ୍‌ରେ ମଧ୍ୟ ଖାଇଥିଲି । ସେତେବେଳର ମେସ୍ ଖର୍ଚ୍ଚ, ପୁଣି ଜଗତ୍‌ସିଂହପୁର ଭଳିଆ ପନିପରିବା ମାଛ ବହୁଳ ଜାଗାରେ, ଖୁବ୍ କମ୍ ପଡ଼ୁଥିଲା । ଚାଉଳ, ପୋଟଳ, କଖାରୁ, କଦଳୀ ମାଛ, ଜିନିଷ ଖୁବ୍ ଶସ୍ତା ଥିଲା । ମୋର ମନେ ପଡ଼ୁଛି ମେସ୍‌ରେ ଖାଇବା ଖର୍ଚ୍ଚ ମୁଣ୍ଡ ପିଛା ୨୦ ଟଙ୍କା ଭିତରେ ପଡ଼ୁଥିଲା । –କ୍ଲାସରେ ମୋର ପଢ଼ାଇବା ପଦ୍ଧତି ପିଲମାନଙ୍କୁ ଭଲ ଲାଗିଲା । ରୁଟିନ କାମ ବ୍ୟତୀତ, ମୁଁ ପିଲମାନଙ୍କ ମଧ୍ୟରେ ସଭସମିତି ତର୍କ ପ୍ରତିଯୋଗିତା ପ୍ରଭୃତି ବ୍ୟବସ୍ଥା କରିବାରୁ ଇସ୍କୁଲର ଶିକ୍ଷକମାନେ ମୋତେ ଭରୀ ପସନ୍ଦ କଲେ । ଦିନେ ପୋଲିସ ସାହେବ ଶ୍ରୀକୃଷ୍ଣ ମହାପାତ୍ର ହେଡ଼ମାଷ୍ଟରଙ୍କ କ୍ୱାଟରରେ ଆସି ପହଂଚି ଗଲେ ଏବଂ ମୋତେ ଦେଖି ସର୍ବ ପ୍ରଥମେ ଜେରା ଆରମ୍ଭ କରି ଦେଲେ ବାବୁ, ତୁମେ ଆମ ଇସ୍କୁଲରେ ରହିବ, ଏଇଲେ ଚାକିରୀ ଛାଡ଼ି ଯାଇ ପାରିବ ନାହିଁ । କଅଣ କହୁଛ ?" ଏତିକିରେ ମୋ ମନରେ ଛାନିଆ ପଶିଲା, ଭାବିଲି, ଇଏ ମୋତେ ଏଇ ସ୍କୁଲରେ ସବୁ ଦିନ ପାଇଁ ଅଟକାଇ ରଖି ଦେବେ କି ? ଜଗତ୍‌ସିଂହପୁରର ପ୍ରାଚୀନ ନାମ ହରିହରପୁର । ସେତେବେଳେ ଏପ୍ରିଲମାସ ପହିଲରୁ ସକାଳୁଆ କ୍ଲାସ ହେଉଥିଲା । ଏଗାରଟା ବେଳକୁ ସ୍କୁଲ ଛୁଟି । ଦ୍ୱିପ୍ରହରଟା ବିଲ୍‌କୁଲ୍ ସମୁଦ୍ର କୂଳିଆ ପବନରେ ଅସ୍ଥିର ହେଉଥିଲା । ସଂଧ୍ୟାବେଳକୁ ମଶାମାନଙ୍କର ଉପଦ୍ରବ । ସେତେବେଳର ସ୍କୁଲ ମାଷ୍ଟମାନଙ୍କ ମଧ୍ୟରେ ବେଶ୍ ସଂହତି ଏବଂ ସଖ୍ୟ ଥିଲା । ଜଗତ୍‌ସିଂହପୁରରେ ମାତ୍ର ଅଳ୍ପ ଦିନର ଚହଣି ମଧ୍ୟରେ ଆଖ ପାଖ ଗାଁ ମାନଙ୍କ ସହିତ ମୋର ଗୋଟାଏ ସଂପର୍କ ବଢ଼ି ଉଠିଥିଲା । ବିଶେଷତଃ ରାହୁଗ ଗ୍ରାମର ପରମାନନ୍ଦ ବାବୁଙ୍କ ପରିବାର ସହିତ ମୁଁ ବେଶ୍ ପରିଚିତ ହୋଇଥିଲି । ତାଙ୍କର ପୁଅଝିଅଙ୍କୁ ସଂଧ୍ୟାବେଳେ ଟିଉସନ କରିବାକୁ ମୋତେ ପରମାନନ୍ଦ ବାବୁ ପ୍ରସ୍ତାବ ଦେଲେ । ବଡ଼ ଖାନଦାନୀ

ଘର, ଗଛ ମାଛ ପୋଖରୀ, ଧାନବିଲ, ତାଙ୍କର ବଡ଼ ଜମିଦାରିଆ ଚଳଣି । ଗ୍ରୀଷ୍ମ ଛୁଟିରେ ବାଣପୁରକୁ ଆସିଲି ଏବଂ ଗ୍ରୀଷ୍ମ ଛୁଟି ଭିତରେ ମୋର ଇଣ୍ଟରମିଡ଼ିଏଟ୍ ପରୀକ୍ଷା ଫଳ ପ୍ରକାଶିତ ହେଲା । ସେତେବେଳେ ସମଗ୍ର ଓଡ଼ିଶାରେ ଖୁବ୍ କମ୍ ଛାତ୍ରଛାତ୍ରୀ ପରୀକ୍ଷା ଦେଉଥିଲେ । କଲେଜ ସଂଖ୍ୟା ତ ଆଙ୍ଗୁଠିରେ ଗଣି ହେଉଥିଲା । ଆଇ.ଏ.ରେ ଦ୍ୱିତୀୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେଲି । ଅଧିକାଂଶ ତୃତୀୟ ଶ୍ରେଣୀ ପାଇଥିଲେ । ରେଭେନ୍ସା କଲେଜରୁ ଆମେ ସାତଆଠଜଣ ମାତ୍ର ଦ୍ୱିତୀୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିଲୁ । ଫାଷ୍ଟ ଡ଼ିଭିଜନ୍ ସେତେବେଳେ ପ୍ରାୟ କ୍ୱଚିତ୍ ମିଳୁଥିଲା । ମୋର ସହପାଠୀ ଗଣେଶ୍ୱର ପ୍ରହରାଜ ମଧ୍ୟ ଦ୍ୱିତୀୟ ଶ୍ରେଣୀ ପାଇଥିଲେ । ଆଉ ଜଣେ ସହପାଠୀ ଥିଲେ ମନ୍ମଥ ନାଥ ଦାସ । ତାଙ୍କର ପରୀକ୍ଷା ଫଳ ଆଶାନୁରୂପ ହୋଇ ନଥିଲା । ଆର୍ଥିକ ଅଭାବ ଯୋଗୁଁ ମୁଁ ଯାହା ପଢ଼ି ନଥାନ୍ତି ଆଇ.ଏ.ରେ ଦ୍ୱିତୀୟ ଶ୍ରେଣୀ ଅଧିକାର କରିଥିବାରୁ, ବଡ଼ଭାଇଙ୍କର ପ୍ରସ୍ତାବ ହେଲା, ମୁଁ ଯେମିତି ହେଲେ ସେହି ରେଭେନ୍ସା କଲେଜରେ ବି ଦୁଇବର୍ଷ ବି. ଏ.ଟା ପଢ଼ିବି । ବିଶେଷତଃ ସାର୍ ଜିଦ୍ କଲେ ଯେ ମୋତେ ଯେମିତି ହେଲେ ବି.ଏ. ପଢ଼ିବାକୁ ପଡ଼ିବ । ଆଇ. ଏ. ପଢ଼ିବା ସମୟରେ ମୋତେ ଜଣେ ଭଦ୍ରବ୍ୟକ୍ତି ବରାବର ସାହାଯ୍ୟ କରିଥିଲେ । ସେ କଟକ ବକ୍ସି ବଜାର ପାଖ ବେପାରୀ ସାହିରେ ରହୁଥିଲେ । ସେ ସ୍କୁଲ ଇନ୍ସପେକ୍ଟର ଅଫିସରେ ମୁଖ୍ୟ ଅଡ଼ିଟର ଭାବରେ କାର୍ଯ୍ୟ କରୁଥିଲେ । ବାଣପୁର ହାଇସ୍କୁଲ ହିସାବପତ୍ର ଅଡ଼ିଟ୍ କରିବାକୁ ଯିବା ସମୟରେ ତାଙ୍କ ସହିତ ମୋର ବଡ଼ ଭାଇ ଏବଂ ଆଉ ସାର୍ଙ୍କର ବନ୍ଧୁତା ଗଢ଼ି ଉଠିଥିଲା । ମୁଁ ଆଇ. ଏ. ପାଶ୍ କରିବା ଖବର ପାଇ ସେ ମଧ୍ୟ ସାର୍ଙ୍କୁ କହିଥିଲେ ଯେ ମୁଁ ଯେପରି ବି. ଏ. ପଢ଼ିବି । ସେହି ଅଡ଼ିଟରଙ୍କ ନାମ ପୁରୁଷୋତ୍ତମ ମିଶ୍ର, ଘର ସମ୍ବଲପୁର ଅଞ୍ଚଳରେ । କଟକରେ ମେସ୍‌ରେ ରହି ଆଇ. ଏ. ଏବଂ ବି. ଏ: ପଢ଼ିବା ସମୟରେ ମୁଁ ଅନେକବାର ତାଙ୍କ ଘରଠାକୁ ଯାଉଥିଲି । ବେଳେ ବେଳେ ତାଙ୍କ ଘରେ ଖାଇବା ପାଇଁ ତାଙ୍କ ସ୍ତ୍ରୀ ମୋତେ ବାଧ୍ୟ କରୁଥିଲେ । ତାଙ୍କର ଅନାବିଳ ସ୍ୱେଚ୍ଛାକୃତ ସାହାଯ୍ୟ ଏ ଯୁଗରେ ବିରଳ । ବି. ଏ.ରେ ବି କି ସବ୍‌ଜେକ୍ଟ ନେଇ ପଢ଼ିବି ତାହା ମଧ୍ୟ ସାର୍ ସ୍ଥିର କରିଥିଲେ । ତେବେ ଅଭାବଗ୍ରସ୍ତ ଜୀବନରେ ମୁଁ ମୋର ଶକ୍ତି ଏବଂ

ସମୟର ବରାବର ସଚେତନ ଥିଲି । ମୋତେ ଟିଉସନ କରିବାକୁ ପଡ଼ିବ, ସେଥିପାଇଁ ପଢ଼ାରେ ବେଶୀ ସମୟ ଦେଇ ପାରିବି ନାହିଁ । ତେଣୁ ମୁଁ ବାଛି ବାଛି ବିଷୟ ନେଇଥିଲି । ଇତିହାସ ଏବଂ ଓଡ଼ିଆ ଅନର୍ସ । ମଫସଲର ଗରିବ ପିଲାମାନଙ୍କ ପାଇଁ କଟକ ସହରର ଓକିଲ, ଜମିଦାର, ବଡବଡିଆ ଲୋକଙ୍କ ସାହାଯ୍ୟ ବିଶେଷତଃ 'ଟିଉସନ' ପ୍ରଥା ଏକ ଐତିହାସିକ ଅଣ ଆନୁଷ୍ଠାନିକ ବ୍ୟାପାର । ମୋର ଆଇ. ଏ. ଏବଂ ବି.ଏ. ପଢିବା ସମୟରେ ମୁଁ ଏମିତି କେତେକ ଭଦ୍ରବ୍ୟକ୍ତିଙ୍କ ଘରେ ପୁଅଝିଅଙ୍କୁ ଟିଉସନ କରି ନିଜର ଅଭାବ ପୂରଣ କରୁଥିଲି । ସ୍ବଦାନନ୍ଦ ରାୟଙ୍କ ବାପା ମୋତେ ଡାକି ତାଙ୍କ ଘରେ ଟିଉସନ ଖଂଜିଦେଲେ । ଟିଉସନରୁ ସେତେବେଳେ ଗୋଟାଏ ଘରୁ ଆଠ ଦଶ ଟଙ୍କା ମିଳିଲେ ଯଥେଷ୍ଟ । ରେଭେନ୍‌ସା କଲେଜରେ ମୁଁ ଆଇ.ଏ., ବି.ଏ. ପଢିବା ସମୟରେ ଡକ୍ଟର ପ୍ରାଣକୃଷ୍ଣ ପରିଡ଼ା, ଶ୍ରୀଯୁକ୍ତ ସତ୍ୟାନନ୍ଦ ରାୟ ଏବଂ ପରେ ମହେଶ ଚନ୍ଦ୍ର ପ୍ରଧାନ ଅଧ୍ୟକ୍ଷ ଥିଲେ । ଯାହା ହେଉ, ମୁଁ ରେଭେନ୍‌ସା କଲେଜରେ ୧୯୪୪ମସିହା ଜୁଲାଇ ମାସରେ ନାମ ଲେଖାଇଲି ଅପ୍ରତ୍ୟାଶିତ ଭାବରେ ମୋତେ ଗଡ଼ଜାତ ବୃତ୍ତି ମାସିକ ୧୫ ଟଙ୍କା କରି ମିଳିଥିଲା । କଲେଜ ଅଧ୍ୟକ୍ଷଙ୍କର ମୋ ପ୍ରତି କୃପା ଦୃଷ୍ଟି ପଡ଼ିଥିଲା । ଏମିତି ମୁଁ ବି.ଏ. ଶ୍ରେଣୀରେ ନାମ ଲେଖାଇଲି ସିନା, ତେଣେ ଜଗତ୍‌ସିଂହପୁର ହାଇସ୍କୁଲର କର୍ତ୍ତୃପକ୍ଷ ପୋଲିସ ସାହେବ ମୋ ଉପରେ ଭାରୀ ଖପା ହୋଇଥିଲେ । ସେତେବେଳକୁ ମୁଁ ସ୍କୁଲ ଛାଡ଼ି ସାରିଥିଲି । ମୋ ପାଇଁ ସାର୍ ପୋଲିସ ସାହେବଙ୍କୁ ସଫେଇ ଦେବାକୁ ପଡ଼ିଥିଲା । ଜଗତ୍‌ସିଂହପୁର ହାଇସ୍କୁଲ ସବୁଦିନ ପାଇଁ ମୋ ମନରେ ଦରଦ ସୃଷ୍ଟି କରିଥିଲା । ବି.ଏ. ପଢ଼ିବା ସମୟରେ ମୁଁ ବରାବର ବାଣପୁର ଯିବା ଆସିବା କରୁଥିଲି । ସାର୍ ଛୁଟିରେ ତାଙ୍କ ଘରକୁ ଆସୁଥିଲେ ଏବଂ ବରାବର ମୋର ପାଠପଢ଼ା ପାଇଁ ଆଗ୍ରହ ପ୍ରକାଶ କରୁଥିଲେ ୧୯୪୬ ମସିହାରେ ବି.ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲି । ସେତେବେଳକୁ ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହୋଇ ସାରିଥାଏ । ଓଡ଼ିଆରେ ଦ୍ୱିତୀୟ ଶ୍ରେଣୀ ଅନର୍ସ ପାଇଥିଲି । ଫାଷ୍ଟ କ୍ଲାସ କେହି ପାଇ ନ ଥିଲେ । ବି.ଏ. ପାଶ୍ କରିବା ପରେ ଏମ୍.ଏ. ପଢ଼ିବା । ଏହି ସମୟଟା ମୋ ଜୀବନରେ ଦେଖା ଦେଇଥିଲା ଆଉ ଏକ ସମ୍ପୂର୍ଣ୍ଣ ଆଦର୍ଶ ଜଗତ ତଥା ସ୍ୱପ୍ନର ପ୍ରସାରିତ ବେଳାଭୂମି । ଦୁଃଖ ଅଭାବ ପ୍ରପୀଡ଼ିତ ଏକ ନିମ୍ନ ମଧ୍ୟବିତ୍ତ ପରିବାରର ଜଣେ ସଂଗ୍ରାମୀ

ଛାତ୍ର ଜୀବନରେ ଦେଖା ଦେଇଥିଲା ଆଉ ଏକ ସଂଗ୍ରାମୀ ଝଲକ। ତାହା ହେଉଛି ଭାରତୀୟ ସ୍ୱାଧୀନତା ସଂଗ୍ରାମର ଉଦାର ଭାବମୂର୍ତ୍ତି ଏବଂ ଓଡ଼ିଶା ଗଡ଼ଜାତ ଗୁଡ଼ିକରେ ଚାଲିଥିବା ପ୍ରଜାମଣ୍ଡଳ ଆନ୍ଦୋଳନ । ସେହି ବାଣପୁର ହାଇସ୍କୁଲ ପାଖ ହାତୀମୁଣ୍ଡ ପୋଖରୀ ଦୁଆର ଘରଘରେ ବସିଥାଏ । ଦିନେ ଦ୍ୱିପ୍ରହରର ଘଟଣା । ରଣପୁର ଗଡ଼ରୁ ଜଣେ ବାର୍ତ୍ତାବହ ଏକ ଚିଠି ଧରି ପହଞ୍ଚିଥିଲେ । ତାଙ୍କର ନାମ ରତ୍ନାକର ପଟ୍ଟନାୟକ । ରଣପୁର ପ୍ରଜାମଣ୍ଡଳ ସଭାପତିଙ୍କର ହୁକୁମନାମା, ମୋତେ ରଣପୁରରେ ଯଥାଶୀଘ୍ର ଉପସ୍ଥିତ ହେବାକୁ ପଡ଼ିବ । ଉଦ୍ଦେଶ୍ୟଟା ବୁଝିବାକୁ ଡେରି ହେଲା ନାହିଁ । ଗଡ଼ଜାତର ସ୍ୱାଧୀନତା ଆନ୍ଦୋଳନରେ ମୋତେ ସକ୍ରିୟ ଭାବେ ଯୋଗ ଦେବାକୁ ପଡ଼ିବ । ଆମ ଘରେ ଭାଇନା ଭାଉଜ ଏହି ପ୍ରସ୍ତାବ ଶୁଣି ଏକବାର ଖପା ହୋଇ ଉଠିଲେ । କହିଲେ, "ଆମେ ଏଇଥିପାଇଁ ପଇସା ଖର୍ଚ୍ଚ କରି ପାଠ ପଢ଼େଇଥିଲୁ" ଆଉ ସାର୍‌ଙ୍କ କାନରେ ଏହି କଥାଟା ଯେମିତି ପଡ଼ିଲା, ସେ ଏକବାର ନାସ୍ତି ବାଣୀ ଶୁଣାଇଲେ । ସେ କହିଥିଲେ "ଗୋପାଳ ପଢ଼ିବାକୁ ଚାଲିଯାଉ । ପାଖରେ ରହିଲେ ସିନା ସମସ୍ତେ ଏପରି ତାକୁ ଆସି ପ୍ରଭାବିତ କରିବେ" ଯାହା ହେଉ ମୋ ନିକଟରେ ସ୍ୱାଧୀନତା ଆନ୍ଦୋଳନର ମୂଲ୍ୟ ଅଧିକ ବୋଲି ବିଚାର କଲି । ମୁଁ ଲୁଚି କରି ରଣପୁର ଚାଲିଯାଇଥିଲି । ପରେ ପରେ ଭାଇନାଙ୍କର ଚିଠି ଏବଂ ସାର୍‌ଙ୍କର ଧମକ ପୂର୍ଣ୍ଣ ପତ୍ର ମିଳିଥିଲା । ଅଗତ୍ୟା ମୁଁ ଦ୍ୱନ୍ଦ୍ୱରେ ଛଟପଟ ହେଲି । ଶେଷରେ ଭାବିଲି ସାର୍‌ଙ୍କ ପରାମର୍ଶକୁ ମାନିବି ଏବଂ ସ୍ୱାଧୀନତା ଆନ୍ଦୋଳନର ଆହ୍ୱାନକୁ ମଧ୍ୟ ଅମାନ୍ୟ କରିବି ନାହିଁ । ତାହାହିଁ ହେଲା । ସାର୍ ତଥାପି ବରାବର ମୋତେ ତାଗିଦ୍ କରୁଥିଲେ । ଏହିପରି ଆଉ ଏକ ଘଟଣା ଘଟିଥିଲା । ଯେତେବେଳେ ମୁଁ ସାର୍‌ଙ୍କର ଉପଦେଶ ପ୍ରତି କର୍ଣ୍ଣପାତ କରି ନଥିଲି । ଏହା ହେଉଛି ୧୯୪୮ ମସିହାର ଘଟଣା । ଗଡ଼ଜାତ ଆନ୍ଦୋଳନର ଜଣେ ନେତା ଛାପ ମୋ ଦେହରେ ବାଜିଯାଇଥିଲା । ଠିକ୍ ଗଡ଼ଜାତ ମିଶ୍ରଣ ପରେ ପରେ ଓଡ଼ିଶା ସରକାର ମୋତେ ଷଢ଼େଇକଳାର Administrative Officer ଭାବରେ ନିଯୁକ୍ତି ଦେଇଥିଲେ । ମୁଁ ସେତେବେଳକୁ ଏମ୍.ଏ. କ୍ଲାସର ପଢ଼ା ଛାଡ଼ି ଗଡ଼ଜାତ ଆନ୍ଦୋଳନରେ ସାମିଲ ହୋଇ ସାରିଥିଲି । ବଡ଼ ଭାଇ ସରକାରୀ ଟେଲିଗ୍ରାମଟା ପାଇ ପ୍ରଥମେ ନେଇ ସାର୍‌ଙ୍କୁ ଦେଖାଇଥିଲେ । ସାର୍‌ଙ୍କର ମନର ଆନନ୍ଦ ସେଦିନ କହିଲେ ନ ସରେ ।

ବଡ଼ଭାଇଙ୍କ ମାରଫତରେ ଟେଲିଗ୍ରାମ ବାଣପୁର ଠିକଣାରେ ଆସିଥାଏ । ସେତେବେଳେ ମୁଁ ରଣପୁରର ମଫସଲରେ ବୁଲୁଥିଲି । ସାର୍‌ଙ୍କର ମୋ ପାଇଁ ଯେଉଁ ବ୍ୟସ୍ତତା । ତାହା କେବଳ ତାଙ୍କର ଉଦାରତା ଏବଂ ଅନାବିଳ ଶ୍ରଦ୍ଧାର ପ୍ରତୀକ ମାତ୍ର । ଓଡ଼ିଶାର ସେତେବେଳର ପ୍ରଧାନମନ୍ତ୍ରୀ ହରେକୃଷ୍ଣ ମହତାବ ଗଡ଼ଜାତ ଆନ୍ଦୋଳନ ପରିପ୍ରେକ୍ଷୀରେ ମୋତେ ଖୁବ୍ ଭଲ ପାଇଥିଲେ । ଅବଶ୍ୟ ସେତେବେଳକୁ ମୁଁ ପତ୍ରପତ୍ରିକାରେ ଧାରାବାହିକ ଲେଖକ ଥିଲି । ମୋର ଅନୁପସ୍ଥିତିରେ ସାର୍ ମୋ ତରଫରୁ ଟେଲିଗ୍ରାମର ଉତ୍ତର ଟେଲିଗ୍ରାମରେ ଦେଇଥିଲେ "Appointment accepted, joining soon" ବାଣପୁରକୁ ଫେରି ଏହି ସବୁ ଘଟଣା ଜାଣିବା ପରେ ମୁଁ ଆହୁରି ଏକ ଦ୍ୱନ୍ଦ୍ୱରେ ପଡ଼ିଲି । ଗଡ଼ଜାତ ରାଜନୀତିରେ ରହିବି ନା-ଓଡ଼ିଆରେ ଏମ୍.ଏ. ପରୀକ୍ଷା ଦେବି, ନା-ଷଢ଼େଇକଳାରେ ସରକାରୀ ଚାକିରୀରେ ଯୋଗ ଦେବି । ଟାଳଟୁଳ କରି ମୁଁ ସେଦିନ ଚାକିରୀରେ ଯୋଗ ଦେଇ ନଥିଲି । ଏହାପରେ ମହତାବ ବାବୁ ଯେଉଁଠାରେ ଯେତେ ଥର ମୋତେ ଦେଖୁଥିଲେ ହସି ହସି ସମସ୍ତଙ୍କୁ କହୁଥିଲେ "ଆମର ଜଣେ ଯୁବକଙ୍କୁ ଦେଖ, ତାଙ୍କୁ ଡେପୁଟି ମ୍ୟାଜିଷ୍ଟ୍ରେଟ ଚାକିରୀ ଦିଆଗଲା । ସେ କିନ୍ତୁ ସେ ଚାକିରୀକୁ ଉପେକ୍ଷା କଲେ" ପରବର୍ତ୍ତୀ କାଳରେ ମହତାବ ବାବୁ ଗୋଟିଏ ଚିଠିରେ ମୋତେ ଲେଖିଥିଲେ "ତୁମେ ଷଢ଼େଇକଳା ଚାକିରୀରେ ଯୋଗ ଦେଇଥିଲେ ଏତେବେଳକୁ ସେକ୍ରେଟେରୀ ହୋଇ ସାରନ୍ତେଣି" ଠିକ୍ ଏହି ମର୍ମରେ ସାର୍ ମୋତେ ବରବର ମୋର ଚାକିରୀ କଥା ମନେ ପକାଇ ଦେଉଥିଲେ । ଜଣେ କଲେଜ ଶିକ୍ଷକର ନିଅଣ୍ଟିଆ ଏବଂ ନିରମିଷାଶୀ ଚାକିରୀ ଜୀବନର ଦହନ ଏବଂ ଯନ୍ତ୍ରଣା ମଧ୍ୟରେ ପ୍ରଶାସନିକ ଏବଂ ଅଧ୍ୟାପନା ଚାକିରୀର ତୁଳନା ଆପେ ଆପେ ମନକୁ ଚପାଇ ରଖେ ।

ସାର୍ କଟକ ଖ୍ରୀଷ୍ଟ ମହାବିଦ୍ୟାଳୟରେ ଓଡ଼ିଆ ଅଧ୍ୟାପକ ଭବରେ ଯୋଗଦାନ କରିବା ତାଙ୍କ ଜୀବନର ଏକ ବିଶିଷ୍ଟ ଘଟଣା । କାରଣ ଏହାପରେ ସାର୍ କଟକ ନଗରୀକୁ ତାଙ୍କର କର୍ମଭୂମି ରୂପେ ଗ୍ରହଣ କରି ନେଲେ । ଅନେକ ଦିନ ପର୍ଯ୍ୟନ୍ତ ବାଣପୁର ଘର ଏବଂ ଜମିବାଡ଼ି ବିଷୟ ବୁଝୁଥିଲେ । କଟକରେ ପ୍ରଥମେ ସେ ଷ୍ଟୁଆର୍ଟପାଟଣାରେ ଜଣେ ଖ୍ରୀଷ୍ଟିୟାନ ମହିଳାଙ୍କ ଘରେ ଭଡ଼ାରେ ରହୁଥିଲେ । ଚାହୁଁ ଚାହୁଁ ସମୟ ବିତି ଚାଲିଲା ।

ରେଭେନ୍‌ସା କଲେଜରେ ପ୍ରଥମେ ଓଡ଼ିଆ ସ୍ନାତକୋତ୍ତର ବିଭାଗ ଆରମ୍ଭ ହେଲା ୧୯୪୬ ଡ଼ିସେମ୍ବର ମାସରେ । ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି, ଅଧ୍ୟାପକ ଡକ୍ଟର କରୁଣାକର କର ଥିଲେ ବିଭାଗର ସର୍ବୋଚ୍ଚ କର୍ତ୍ତା । ଆମେ ତିନିଜଣ ରେଭେନ୍‌ସା କଲେଜରେ ଓଡ଼ିଆ ଏମ୍.ଏ. କ୍ଲାସର ପ୍ରଥମେ ନାମ ଲେଖାଇଥିଲୁ । କଳାହାଣ୍ଡିର ଅର୍ଜ୍ଜୁନ ଯୋଷୀ, ମୁଁ ଏବଂ ଶାନ୍ତି ଦେବୀ । ଏହା ପୂର୍ବରୁ ମୁଁ କଲିକତା ଯାଇ ଓଡ଼ିଆ ଏମ୍. ଏ. ପଢିବି ବୋଲି ବ୍ୟବସ୍ଥା କରିଥିଲି । ପଣ୍ଡିତ ବିନାୟକ ମିଶ୍ର ଏ ଦିଗରେ ମୋତେ ଉତ୍ସାହିତ କରିଥିଲେ । ସାର୍ ଏବଂ ପଣ୍ଡିତ ବିନାୟକ ମିଶ୍ର ବାଣପୁରରେ ପଡ଼ୋଶୀ ଥିଲେ ଏବଂ ପରବର୍ତ୍ତୀ କାଳରେ ସେମାନେ ଘନିଷ୍ଠ ବନ୍ଧୁତା ସୂତ୍ରରେ ଆବଦ୍ଧ ହୋଇଥିଲେ । ସେହିପରି ଖ୍ରୀଷ୍ଟ ମହାବିଦ୍ୟାଳୟର ପଣ୍ଡିତ ବାନାମ୍ବର ଆଗ୍ରର୍ଯ୍ୟ ମଧ୍ୟ ସାର୍‌ଙ୍କର ଖୁବ୍ ଆତ୍ମୀୟ ଥିଲେ । ୧୯୪୬ ମସିହାର କଲିକତାରେ ହିନ୍ଦୁ ମୁସଲମାନ ସାମ୍ପ୍ରଦାୟିକ ଦଙ୍ଗାର ବିଭୀଷିକା ମଧ୍ୟରେ ଗତି ଗତି ମୋତେ କଲିକତା ଛାଡ଼ିବାକୁ ହୋଇଥିଲା । କଲିକତାରେ ବିନାୟକ ମିଶ୍ରଙ୍କ ବାସସ୍ଥାନ ବେଙ୍ଗଲ ବୋର୍ଡ଼ିଂରୁ ହାବୁଡ଼ା ଷ୍ଟେସନ ଯାଏଁ ପହଞ୍ଚିବା ପାଇଁ ମୋତେ ବହୁ ଆୟାସ କରିବାକୁ ପଡ଼ିଥିଲା । ସାର୍ ଏହାପରେ ମୋତେ ମାସେ ଦୁଇମାସ ପାଇଁ ତିର୍ତ୍ତୋଲ ହାଇସ୍କୁଲକୁ ପଠାଇ ଥିଲେ । ମାତ୍ର ସେହି ବର୍ଷ ଡିସେମ୍ବର ମାସରେ ରେଭେନ୍‌ସା କଲେଜରେ ଓଡ଼ିଆ ଏମ୍. ଏ. ଶ୍ରେଣୀ ଆରମ୍ଭ ହୋଇଥିଲା । ଏମ୍.ଏ. ପଢିବା ସମୟରେ ସାର୍ ବହୁ ଭାବରେ ମୋତେ ସାହାଯ୍ୟ କରିଥିଲେ । ମୁଁ ସେତେବେଳେ କଲେଜର ପଶ୍ଚିମ ଛାତ୍ରାବାସରେ ରହିଥିଲି । ଗଡ଼ଜାତ ଆନ୍ଦୋଳନ ମିଶ୍ରଣ ପରେ ଧୀମେଇ ଆସିଥିଲା, ମାତ୍ର ମୋ ପରି ରାଜଦ୍ରୋହୀଙ୍କ ବିରୋଧରେ ରାଜତନ୍ତ୍ରର ପ୍ରତିଶୋଧ ପାଲା ଲାଗି ରହିଥିଲା । ଲୋକନାଥ ଚୌଧୁରୀ ସେତେବେଳେ ମୋ ରୁମ୍‌ରେ ଆତ୍ମଗୋପନ କରି ରହୁଥିଲେ । ଦିନକର ଘଟଣା । ମୁଁ ଏବଂ ଲୋକନାଥ ରୁମ୍ ଭିତରେ ଶୋଇଥିଲୁ । ସମୟ ରାତି ୧୨ଟା ହେବ । ରୁମ୍ ବାହାରେ କବାଟରେ ଠକ୍ ଠକ୍ ଶବ୍ଦ ଶୁଣାଗଲା । କବାଟ ଖୋଲି ଦେଖି ଚମକି ପଡ଼ିଲି । ହଷ୍ଟେଲ ସୁପରିନ୍‌ଟେଣ୍ଡେଣ୍ଟ ପ୍ରଫେସର ଦାସଗୁପ୍ତ । ତାଙ୍କର ପ୍ରଶ୍ନ 'ଏକଟା ଓ୍ୱାରେଣ୍ଟ ଆଛେ ।' ଓ୍ୱାରେଣ୍ଟ ଶବ୍ଦ ଶୁଣି ଲୋକନାଥ ଖଟିଆ ତଳକୁ ଖସି ଯାଇଥିଲେ । ମୁଁ କହିଲି, 'କାଲି ସକାଳେ ଆପଣଙ୍କୁ ଦେଖା କରିବି । ସତକୁ

ସତ ମୋ ନାମରେ ରଣପୁର କୋର୍ଟରୁ ଓ୍ୱାରେଣ୍ଟ ଆସିଥିଲା । ମଙ୍ଗଳାବାଗ ଥାନା ହଷ୍ଟେଲ ସୁପରିନ୍‌ଟେଣ୍ଡେଣ୍ଟଙ୍କୁ ପ୍ରଥମେ ମୋ ବିଷୟରେ ପଚର ଉଚର କରିଥିଲା । ଯାହାହେଉ ପ୍ରଫେସର ଦାସଗୁପ୍ତ ମୋତେ ପୋଲିସ ହାତରେ ଧରାଇ ଦେଲେ ନାହିଁ । ଏହା ପରେ ମୁଁ ସିଧା କୋର୍ଟରେ ହାଜିର ହେଲି । ବଂଧୁ ରାମଚନ୍ଦ୍ର ରାମ ମୋତେ ଜାମିନରେ ଆଣିଥିଲେ । ଏମିତି କେତେ ଘଟଣା ସେତେବେଳେ ମୋର ରାଜନୈତିକ ଏବଂ ଛାତ୍ର ଜୀବନକୁ ଅସ୍ତ ବ୍ୟସ୍ତ କରି ଦେଇଥିଲା । ପ୍ରତ୍ୟେକ ଘଟଣାରେ ସାର୍‌ଙ୍କୁ ଖବର ଦେଇ ପରାମର୍ଶ ମାଗୁଥିଲି । ୧୯୪୮ ମସିହାରେ ଏମ୍.ଏ. ପରୀକ୍ଷା ଦେଇ ପାଶ୍ କଲି । ହଠାତ୍ ଦିନେ ସାର୍‌ଙ୍କ ଦସ୍ତଖତରେ ଖ୍ରୀଷ୍ଟ କଲେଜରୁ ଖଣ୍ଡିଏ ଚିଠି ପାଇଲି 'You are appointed lecturer in Oriya in this college on a conslidated pay of Rs 190 only" ଏହି ସମୟରେ ମହାନଦୀ ଚିତ୍ରୋପଳା ଲୁଣା କରଣ୍ଡିଆ ପ୍ରଭୃତି ନଦୀ ଘେରରେ ପାଟକୁରା ଥାନାର କୋରୁଆ ହାଇସ୍କୁଲରେ ତନିଗୁରି ମାସ ପାଇଁ ଅଟକି ଯାଇଥିଲି । ସେତେବେଳେ କଟକ-ପାରଦ୍ୱୀପ ରାସ୍ତାର ନୂଆପଡ଼ା-ଠାରେ ବସରୁ ଓହ୍ଲାଇ, ମହାନଦୀ, ପାଇକା ପାର ହୋଇ ତେଣ୍ଡାକୁଡ଼ା କଙ୍କଡ଼ା, ବିଲହାଟ, ଚୁଡ଼ିଆପଡ଼ା, ନାଗଣପୁର, ବୋଣିଦା, ମାହାଙ୍ଗା ଗାଁ ବାଟେ କୋରୁଆରେ ପହଞ୍ଚିବାକୁ ପଡୁଥିଲା । ଦିନେ ଦିନେ 'ପ୍ୟାଣ୍ଟ' କାଢ଼ି, ଲୁଙ୍ଗି ପିନ୍ଧି ନଈ ପାଣିରେ ପଶି ଯିବାକୁ ପଡୁଥିଲା । ମୋର କୋରୁଆ ହାଇ-ସ୍କୁଲରେ ରହଣି ସମୟ ବଡ଼ ରୋମାନ୍‌ଟିକ୍ ଏବଂ ଆବେଗପୂର୍ଣ୍ଣ ଥିଲା । ଚିତ୍ରୋପଳା ନଦୀର ବନ୍ୟା । କୋରୁଆ ଜମିଦାର ଶ୍ୟାମସୁନ୍ଦର କାନୁନ୍‌ଗୋଙ୍କର ସାମନ୍ତବାଦୀ ଚଳଣି । ଆଶ୍ରମ ବାଲିକୁଦାର ବାୟା ବାବାଙ୍କର ନାମ ଯଜ୍ଞ ସାଧନା । ମୋର ଭାବପ୍ରବଣ ଯୁବକ ମନରେ ସ୍ୱପ୍ନର ଇନ୍ଦ୍ରଧନୁ ତୋଳିଥିଲା । ଦିନେ ସାର୍ କୋରୁଆ ହାଇସ୍କୁଲରେ ପ୍ରଧାନଶିକ୍ଷକ ଥିଲେ । ପୁରୁଣା ଫାଇଲ ପତ୍ରରେ ତାଙ୍କର ହସ୍ତାକ୍ଷର ଦେଖିଲେ, ମୋତେ ବଡ଼ ଖୁସି ଲାଗୁଥିଲା । ଜମିଦାର କାନୁନ୍‌ଗୋ, ହେଡ୍‌ମାଷ୍ଟର ବୈଷ୍ଣବ ଚରଣ ମହାନ୍ତି, କିରାଣୀ ଦୟାନିଧି ମହାନ୍ତି, ଶିକ୍ଷକ ରାଜକିଶୋର ନାୟକ, ଭଗବାନ ନାୟକ, ପ୍ରଫୁଲ୍ଲ କୁମାର ମିଶ୍ର, ପିଅନ ଚନ୍ଦ୍ରମଣି–ସମସ୍ତଙ୍କର ଏକା ଜିଦ୍, ମୁଁ କୋରୁଆରେ ଯେମିତି ରହିବି । ସେହି ସମୟରେ ଷ୍ଟିଓ୍ୱାର୍ଟ ବିଜ୍ଞାନ କଲେଜର ଅଧ୍ୟକ୍ଷ ବାମଫିଲ୍ଡ ସାହେବ ତାଙ୍କ କଲେଜରେ ପ୍ରତି ସପ୍ତାହରେ ଗୋଟାଏ

ପିରିଅଡ଼ ପଢ଼ାଇବା ପାଇଁ ନିଯୁକ୍ତି ପତ୍ର ଦେଲେ । କୋରୁଆରେ ରହି ମାସେ ଦୁଇମାସ ଷ୍ଟିୱ୍ୟାର୍ଟ ବିଜ୍ଞାନ କଲେଜରେ ପଢ଼ାଇଥିଲି ମଧ୍ୟ । ମାତ୍ର ସର୍ବଶେଷରେ ସାର୍ଙ୍କର ପ୍ରସ୍ତାବ ହେଲା, ଯେବେ ଚାକିରୀ କରିବା କଥା, ତେବେ କଟକ ସହରର ରହି ଯୋଗାଡ କରିବାକୁ ପଡ଼ିବ । ରାଜନୀତି ଏବଂ ସମାଜସେବା କଲେ ଶେଷରେ ଅନୁତାପ କରିବାକୁ ପଡ଼ିବ, ସାର୍ଙ୍କର ଯୁକ୍ତି ନିକଟରେ ମୁଣ୍ଡ ନୁଆଁଇଲି । କିଛିଦିନପରେ ସରକାରଙ୍କର ନିଯୁକ୍ତି ପତ୍ର ମିଳିଲା । ମୁଁ ରେଭେନସା କଲେଜରେ ଅକ୍ଟୋବର ମାସ ୧୯୪୯ ମସିହାରେ ଓଡ଼ିଆ ଅଧ୍ୟାପକ ଭାବରେ ଯୋଗଦେଲି । ଛାତ୍ର ଜୀବନର ଯୁବକ ସୁଲଭ ଉନ୍ମାଦନା, ସ୍ୱାଧୀନତା ସଂଗ୍ରାମର ଭାବ ପ୍ରବଣତା, ବାଣପୁର ଜୀବନର ସ୍ୱପ୍ନ ଓ ପ୍ରଣୟ, ପଛରେ ପଡ଼ି ରହିଲା । ସ୍ୱାଧୀନତା ଏବଂ ମୁକ୍ତିର କେତେ ପ୍ରତିଶ୍ରୁତି । ସାର୍ଙ୍କର ସରଳ ନିରଳସ ଜୀବନର ଆକର୍ଷଣ । ପରବର୍ତ୍ତୀ କାଳରେ ଚାକିରୀ ସର୍ବସ୍ୱ ଜୀବନର ଯନ୍ତ୍ରଣା ମଧ୍ୟରେ ଯେମିତି ଧୀରେ ଧୀରେ ଶିଥିଳ ହୋଇ ଆସିଥିଲା । ମୋ ଜୀବନରେ କର୍ମଭିତ୍ତିକ ଆଦର୍ଶରେ ସାର୍ଥିଲେ ଏକ ଅପୂର୍ବ ଭାବମୂର୍ତ୍ତି । ଆଇ.ଏ., ବି.ଏ. ଏବଂ ଏମ୍.ଏ. ପଢ଼ିବା ବେଳର ଯଥାକ୍ରମେ ମୀନର୍ଭା ମେସ୍, ପ୍ରଗତି ମେସ୍, ବଙ୍ଗାଳି ସାହି ମେସ୍, ଝୋଲା ସାହି ମେସ୍, ଚାଉଳିଆଗଞ୍ଜର ଭାରତୀ ଭବନ ମେସ୍ ଏବଂ ଓଏଷ୍ଟ ହଷ୍ଟେଲରେ ରହିବା ସମୟରେ ସାର୍ ବରାବର ମୋ ନିକଟକୁ ଆସୁଥିଲେ ଏବଂ ମୋର ପଢ଼ାପଢ଼ି ସୁବିଧା ଅସୁବିଧା ବୁଝୁଥିଲେ । ବିଷ୍ଣୁ ବକଲେ ହାଇସ୍କୁଲରେ ପଢ଼ିବା, ଜଗନ୍ନାଥ ପ୍ରଭୃତି ଖ୍ରୀଷ୍ଟ ହାଇସ୍କୁଲରେ ପଢ଼ିବା ବେଳର ସଂପର୍କ ଗୋଟାଏ ପରିବାରର ବନ୍ଧନ ସ୍ୱରୂପ ଥିଲା । ମିସେସ୍ ଦାସଙ୍କର ମୋ ପ୍ରତି ଯେଉଁ ସ୍ନେହ ମମତା ତାହା ଭୁଲିବାର ନୁହେଁ । ସାର୍ ଖ୍ରୀଷ୍ଟ କଲେଜରେ ଅଧ୍ୟାପକ ଭାବରେ ବହୁ ବର୍ଷ ସଫଳତା ସହିତ କାର୍ଯ୍ୟ କରିଥିଲେ । କଲେଜ କର୍ତ୍ତୃପକ୍ଷ ଛାତ୍ର ତଥା ସହକର୍ମୀଙ୍କ ମଧ୍ୟରେ ତାଙ୍କର ଖୁବ୍ ସୁନାମ ଥିଲା । ସାର୍ଙ୍କର ଇଂରେଜୀ ଜ୍ଞାନ ଏବଂ ଫାଇଲ କାମ କରିବାର ଦକ୍ଷତା ଉଚ୍ଚ ଧରଣର ଥିଲା । ସଂସ୍କୃତ ଜ୍ଞାନ ମଧ୍ୟ ଉଲ୍ଲେଖ ଯୋଗ୍ୟ । ମୁଁ ରେଭେନ୍ସା କଲେଜରେ କୋଡ଼ିଏ ବର୍ଷ ଅଧ୍ୟାପନା କରିବା ପରେ ସମ୍ବଲପୁର ବିଶ୍ୱବିଦ୍ୟାଳୟକୁ ଚାଲିଗଲି । ସାର୍ଙ୍କ ସହିତ ଚିଠି ପତ୍ରରେ ସମ୍ପର୍କ ଥିଲା । ଶିକ୍ଷକ ଏବଂ ଅଧ୍ୟାପକ ଶ୍ରୀଧର ଦାସ ଓଡ଼ିଆ ସାହିତ୍ୟରେ ବିଶେଷତଃ ଶିଶୁ ସାହିତ୍ୟ

ଜଗତରେ ଲେଖନୀର ଚୂଡ଼ାନ୍ତ ସିଦ୍ଧି ଏବଂ ସଫଳତା ଅର୍ଜନ କରିଥିଲେ । ଇଂରେଜ କାବ୍ୟ କବିତାର ଅନୁବାଦ ଠାରୁ, ବିଶ୍ୱ ସାହିତ୍ୟର ଲୋକପ୍ରିୟ ଉପନ୍ୟାସ ଏବଂ କାହାଣୀକୁ ଓଡ଼ିଆ ପାଠକ ମାନଙ୍କ ପାଖରେ ପହଞ୍ଚାଇବାରେ ସେ ଥିଲେ ଅଗ୍ରଣୀ । ତାଙ୍କର ଗଣି ଗଣି ଶିଶୁ ରଚନା, ଗଳ୍ପ କାହାଣୀରେ ଓଡ଼ିଆ ଶିଶୁ ସାହିତ୍ୟ ସମୃଦ୍ଧ । ତାଙ୍କ ଚରିତ୍ରରେ ପ୍ରତିଫଳିତ ପ୍ରାଚୀନ ଗୁରୁକୁଳର ଆଦର୍ଶ, ତପୋନିଷ୍ଠା, ଏକାଗ୍ରତା ଏବଂ ଅଧ୍ୟବସାୟ ଅନନ୍ୟ ସାଧାରଣ । ଲୋକ ଦୃଷ୍ଟିର ଅନ୍ତରାଳରେ ଏପରି ଏକ ଦିବ୍ୟ ପ୍ରତିଭା ବ୍ୟକ୍ତି ଏବଂ ଗାର୍ହସ୍ଥ ଜୀବନରେ ଏକ ମହାନ୍ କର୍ମ ପରମ୍ପରା ଏବଂ ଏକ ଭିନ୍ନ ସାହିତ୍ୟିକ ରୁଚି ସୃଷ୍ଟି କରିଥିଲେ । ପଞ୍ଚତନ୍ତ୍ରର ଓଡ଼ିଆ ଅନୁବାଦ ତାଙ୍କରି କୃତିତ୍ୱ । ସାର୍‌ଙ୍କ ସହିତ ଏବଂ ତାଙ୍କ ପିଲମାନଙ୍କ ସହିତ ମୋର ଯେଉଁ ସହୃଦୟତାର ସଂପର୍କ, ତାହା ମୋ ଜୀବନର ବହୁ ପ୍ରେରଣା ଏବଂ ସ୍ମୃତିର ସାମଗ୍ରୀ । ତାଙ୍କର ଅଧ୍ୟାପକ ଜୀବନରେ ତାଙ୍କ ସହିତ ବିଶ୍ୱବିଦ୍ୟାଳୟ ଏବଂ ବୋର୍ଡ କାର୍ଯ୍ୟରେ ମୁଁ ବହୁ ଭାବରେ ସଂପୃକ୍ତ ହୋଇଥିଲି । ସେ ସବୁ ବିବରଣୀର ବର୍ଣ୍ଣନା ଏହି କ୍ଷୁଦ୍ର ଲେଖାରେ ସମ୍ଭବ ନୁହେଁ । ତାଙ୍କର ଏକମାତ୍ର କନ୍ୟା ସରକାରୀ ହାଇସ୍କୁଲରେ ଶିକ୍ଷୟିତ୍ରୀ । ତିନି ପୁଅ ଯଥାକ୍ରମେ ଆଇ.ଏ.ଏସ୍., ରେଳବାଇ ସର୍ଭିସ ଏବଂ ଇଂଜିନିୟର ସର୍ଭିସରେ ପ୍ରତିଷ୍ଠିତ । ଜୀବନର ଶେଷ ପର୍ଯ୍ୟନ୍ତ କର୍ମବୀର ପୌରୁଷ ଭାବରେ ସେ ସମସ୍ତଙ୍କର ଶ୍ରଦ୍ଧା ଅଧିକାର କରିଥିଲେ । ଶେଷରେ ସାର୍‌ଙ୍କ ସ୍ମୃତି ଉଦ୍ଦେଶ୍ୟରେ 'ହିତୋପଦେଶ'ରୁ ଗୋଟିଏ ଶ୍ଳୋକ ଉଦ୍ଧାର କରୁଛି ।

"ଯସ୍ୟ ମିତ୍ରେଣ ସମ୍ଭାଷୋ ଯସ୍ୟ ମିତ୍ରେଣ ସଂସ୍ଥିତିଃ
ଯସ୍ୟ ମିତ୍ରେଣ ସଂଳାପସ୍ତତୋ ନାସ୍ତୀହ ପୁଣ୍ୟବାନ୍ ।"

ଏହାର ଅର୍ଥ ହେଲା ଯିଏ ମିତ୍ର ସହିତ ସମ୍ଭାଷଣ କରେ, ମିତ୍ର ସହିତ ବାସ କରେ, ମିତ୍ର ସହିତ ଆଳାପ କରେ, ତାହାଠାରୁ ପୁଣ୍ୟବାନ୍ ଆଉ କେହି ନାହିଁ ।



# କର୍ମଯୋଗୀ ଅଧ୍ୟାପକ ଶ୍ରୀଧର ଦାସ

ପଠାଣି ପଟ୍ଟନାୟକ

## ସାମ୍ବାଦିକଠାରୁ ଅଧ୍ୟାପକ

ସେ ହେଉଛି ଉଣେଇଶିଶହ ଏକାବନ ମସିହା ଏପ୍ରିଲ ମାସର କଥା । ଖ୍ରୀଷ୍ଟ ମହାବିଦ୍ୟାଳୟରେ ଦୁଇଟି ଓଡ଼ିଆ ଅଧ୍ୟାପକ ପଦ ପାଇଁ ଇଣ୍ଟରଭିଉ ହେଉଥାଏ । ଇଚ୍ଛୁକ ପରୀକ୍ଷାର୍ଥୀ ମାନଙ୍କୁ କୌଣସି ପ୍ରଶ୍ନ ପଚରା ଯାଉ ନଥାଏ । ସେମାନେ କେବଳ ସାଧାରଣ କ୍ଲାସରେ ପାଠ ପଢ଼ାଇବେ । ବିଗ୍ରହକ ହେବେ ତତ୍କାଳୀନ ଅଧ୍ୟକ୍ଷ ରେଭରେଣ୍ଡ ବ୍ରହ୍ମାନନ୍ଦ ମହାନ୍ତି ଏବଂ ଓଡ଼ିଆ ବିଭାଗୀୟ ମୁଖ୍ୟ ଶ୍ରୀଧର ଦାସ । ସାଧାରଣ କ୍ଲାସରେ ଛାତ୍ର ସଂଖ୍ୟା ପ୍ରାୟ ଦୁଇଶହ ପାଖାପାଖି । ଛାତ୍ରୀ କେହି ନଥିଲେ । ପଞ୍ଚାବନ ମିନିଟର କ୍ଲାସକୁ ଯଦି ଜଣେ ପ୍ରାର୍ଥୀ ସୁଶୃଙ୍ଖଳରୂପେ ନିୟନ୍ତ୍ରଣ କରି ଯଥାର୍ଥ ଶିକ୍ଷାଦାନ କରି ପାରିବ, ସେହି କେବଳ ମନୋନୀତ ହେବ ।

ଏହି ଇଣ୍ଟରଭିଉରେ ବିଶ୍ୱବିଦ୍ୟାଳୟ ସ୍ନାତକ ଏବଂ ଉପାଧ୍ୟାୟର ପରୀକ୍ଷାରେ ସର୍ବୋଚ୍ଚ ନମ୍ବର ରଖି ସ୍ୱର୍ଣ୍ଣପଦକ ପ୍ରାପ୍ତ ହୋଇଥିବା ଶ୍ରୀନିବାସ ମିଶ୍ର ଓ ଲେଖକ ନିଜେ ମନୋନୀତ ହୋଇଥିଲେ । ଏହି ଶ୍ରୀନିବାସ ମିଶ୍ର ପରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ପ୍ରଫେସର ହୋଇ ଅବସର ଗ୍ରହଣ କରିଛନ୍ତି । ମୋ ପରି ଜଣେ ସାଧାରଣ ଛାତ୍ର ନିର୍ବାଚିତ ହେବା ଅତ୍ୟନ୍ତ ଆଶ୍ଚର୍ଯ୍ୟଜନକ ଥିଲା । ମୋର ଶିକ୍ଷାଦାନ ଏବଂ ବକ୍ତୃତା ଶୈଳୀରେ ମୁଗ୍ଧ ହୋଇ ଅଧ୍ୟାପକ ଶ୍ରୀଧର ଦାସ କହି ପକାଇଲେ– ତୁମେ ସିନା ଗୋଟିଏ କ୍ଲାସ ବୋଲି ଏପରି ଚମତ୍କାର କରି ପାରିଲ । ଆମକୁ ଯେ ସପ୍ତାହରେ ପଚିଶ ଛବିଶ କ୍ଲାସ ନେବାକୁ ପଡ଼େ ।"

ତାଙ୍କରି ଆଶୀର୍ବାଦରୁ ଅଧ୍ୟାପକ ହୋଇ ରହିଗଲି । ସେତେବେଳକୁ ପ୍ରଜାତନ୍ତ୍ର ଦୈନିକ ସମ୍ବାଦପତ୍ରରେ ଗୋଟିଏ ବର୍ଷ ସହକାରୀ ସମ୍ପାଦକ ହିସାବରେ କାର୍ଯ୍ୟକରି ସାରିଥାଏ । ଆଉ ସେ ଆଡ଼କୁ ମୁହଁ ଫେରଇ ନାହିଁ ।

## ସ୍ନେହ ଓ ପାଣ୍ଡିତ୍ୟର ମୂର୍ତ୍ତିମନ୍ତ ପ୍ରକାଶ

ବିଭାଗୀୟ ମୁଖ୍ୟ ଅଧ୍ୟାପକ ଶ୍ରୀଧର ଦାସ କଲେଜରେ ଯୋଗଦେଲା ଦିନ ମୋର ଜନ୍ମ ତାରିଖ ପଚାରିଲେ । ୧୯୨୮ ମସିହା ବୋଲି ଜାଣିଲା ପରେ ପିଠି ଥାପୁଡେଇ କହିଲେ, “ହେ ତୁମେ ପିଲାଲୋକ । ତୁମ ଜନ୍ମ ବେଳକୁ ମୁଁ ବି.ଏ. ପାସ କରି ଓଳସିଂ ହାଇସ୍କୁଲରେ ଚାକିରୀ କରି ସାରିଲିଣି ।” “ଆପଣ”ରୁ “ତୁମେ” ହୋଇଗଲି । ସେହିଦିନୁ ପୁତ୍ରର ସ୍ନେହରେ ଅନୁଗୃହୀତ ହୋଇ ରହିଲି ୧୯୬୮ ମସିହା ଜୁନ ୩୦ ତାରିଖ ପର୍ଯ୍ୟନ୍ତ, ସେ ଯେଉଁଦିନ ବିଭାଗୀୟ ମୁଖ୍ୟ ଭାବରେ ଅବସର ଗ୍ରହଣ କଲେ ।

ଅଧ୍ୟାପକ ଦାସ କେବେହେଲେ ସହକାରୀ ସହକର୍ମୀମାନଙ୍କ ଉପରେ ବିରକ୍ତ ହେବା ମୁଁ ଜାଣି ନାହିଁ । ସେ ଥିଲେ ଆମପାଇଁ ଅମୋଘ ବର୍ମ ସଦୃଶ । ଅଧ୍ୟକ୍ଷଙ୍କ ବ୍ୟକ୍ତିତ୍ୱ ବହୁ ସମୟରେ ଆମ୍ଭମାନଙ୍କ ମନରେ ଭୀତି ସଂଚାର କରୁଥିଲେହେଁ ବିଭାଗୀୟ ମୁଖ୍ୟ ତାଙ୍କର ଅତ୍ୟନ୍ତ ବିଶ୍ୱସ୍ତ ଏବଂ ପ୍ରିୟପାତ୍ର ଥିବାରୁ ଆମର କୌଣସି ଆଶଙ୍କା ନଥିଲା । ଶ୍ରୀଧର ବାବୁ ଥିଲେ ଜଣେ ସବ୍‌ଜାନତା ବ୍ୟକ୍ତିତ୍ୱ । ଶିକ୍ଷାଦାନ, ଅଫିସ ପରିଚାଳନା, ଶିକ୍ଷା ବିଭାଗୀୟ ଆଇନର ତର୍ଜମା, ବିଶ୍ୱବିଦ୍ୟାଳୟ ସଂକ୍ରାନ୍ତୀୟ ବିଧିବ୍ୟବସ୍ଥା ଏବଂ ସର୍ବୋପରି ଇଂରେଜୀ, ବଙ୍ଗଳା, ହିନ୍ଦୀ, ଓଡ଼ିଆ ଓ ସଂସ୍କୃତ ଭାଷାରେ ଅସାଧାରଣ ବ୍ୟୁତ୍ପତ୍ତି ପାଇଁ ମହାବିଦ୍ୟାଳୟରେ ତାଙ୍କର ଉପସ୍ଥିତି ବାରି ହୋଇ ପଡ଼ୁଥିଲା । ସେ ଥିଲେ ଏକ ଅନନ୍ୟ ସାଧାରଣ ବ୍ୟକ୍ତିତ୍ୱ । କଠୋର ପରିଶ୍ରମ କରି ସେ କଲେଜର ବହୁ ଦାୟିତ୍ୱ ତୁଲାଇ ପାରୁଥିଲେ । ତାଙ୍କ ଯୋଗୁ ଅଧ୍ୟକ୍ଷ ମହୋଦୟ ଏକପ୍ରକାର ନିଶ୍ଚିନ୍ତ ଥିଲେ କହିଲେ ଚଳେ ।

କେବଳ କଲେଜରେ ନୁହେଁ, କଲେଜ ବାହାର ସମାଜରେ ଜଣେ ଶିକ୍ଷାବିତ୍ ଓ ସାହିତ୍ୟିକ ହିସାବରେ ତାଙ୍କର ପ୍ରତିଷ୍ଠା ଓ ସ୍ୱୀକୃତି ଥିଲା ଅପ୍ରତିହତ । ସ୍ୱନାମଧନ୍ୟ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି, ଅଧ୍ୟାପକ

ବିନାୟକ ମିଶ୍ର ଏବଂ ଭାରତ ସେବକ ସମିତିର ଲକ୍ଷ୍ମୀନାରାୟଣ ସାହୁ ତାଙ୍କୁ କିପରି ସ୍ନେହ ଓ ଶ୍ରଦ୍ଧା କରୁଥିଲେ, ତାହା ଅନୁଭବ ବ୍ୟତୀତ ଭାଷାରେ ବ୍ୟକ୍ତ କରାଯାଇ ପାରିବ ନାହିଁ ।

ତାଙ୍କ ସହିତ କର୍ମ କରିବା ଥିଲା ଏକ ଚମତ୍କାର ସୁଯୋଗ । ଆଲୋଚନା ଛଳରେ ଜୀବନର ବିପୁଳ ଅନୁଭୂତି ସେ ବଖାଣି ବସୁଥିଲେ । ଆଳସ୍ୟ ଥିଲା ତାଙ୍କର ପରମ ଶତ୍ରୁ । ତେଣୁ ତରୁଣ ସହକର୍ମୀ ମାନଙ୍କୁ ଅକୁଣ୍ଠଚିତ୍ତରେ ଅଧ୍ୟୟନ ଅଧ୍ୟାପନା ସହିତ ଅବସର ସମୟରେ ଆଉ କିଛି ଅଧିକ ସାରସ୍ୱତ ସାଧନା ଅଥବା ଗବେଷଣା କରିବା ପାଇଁ ସେ ପ୍ରେରଣା ପ୍ରଦାନ କରୁଥିଲେ । ସେ ଥିଲେ ଏକ ଚଳନ୍ତି ଡ଼ିକ୍ସିନାରୀ । ଯେ କୌଣସି ବିଷୟରେ ଆମ ମନରେ ପ୍ରଶ୍ନ ଓ ସଂଶୟ ଉତ୍‌ଥାପିତ ହେଲେ ସେ ତାର ସଦୁତ୍ତର ଦେଇ ପକାଉଥିଲେ କିମ୍ବା ଆମକୁ ଲାଇବ୍ରେରୀକୁ ଟାଣିନେଇ ଉର୍ଦ୍ଦିଷ୍ଟ ପୁସ୍ତକଟି ପଢିବାପାଇଁ ସୂଚନା ଦେଉଥିଲେ । ସହକର୍ମୀ ହିସାବରେ ଦୀର୍ଘ ପନ୍ଦରବର୍ଷ ଏବଂ ଅବସର ଗ୍ରହଣ ପରେ ଆଜୀବନ ତାଙ୍କ ସହିତ ଆଳାପ ଆଲୋଚନା କରି ମୁଁ ବହୁ ଭାବରେ ସମୃଦ୍ଧ ହୋଇଛି ।

## ନିଷ୍ଠାପର ଓ ନିରଳସ ଶିକ୍ଷକ

ଆଜୀବନ ସେ ଆଦର୍ଶ ଶିକ୍ଷକ ଭାବରେ ଜୀବନ ବିତାଇ ଆସିଥିଲେ । ମାଇନର, ସେକେଣ୍ଡାରୀ ସ୍କୁଲଠୁ ଆରମ୍ଭ କରି ମହାବିଦ୍ୟାଳୟ ପର୍ଯ୍ୟନ୍ତ ସର୍ବତ୍ର ତାଙ୍କର ଶିକ୍ଷକ ଜୀବନ ସାର୍ଥକ ହୋଇଥିଲା । ବୈୟାକରଣ, ଶିଶୁ ସାହିତ୍ୟର ଲେଖକ, ଅନୁବାଦକ ଏବଂ ଶବ୍ଦକୋଷର ସଂକଳକ ଭାବରେ ତାଙ୍କର ସ୍ଥାନ ଅପୂରଣୀୟ ରହିବ । ତାଙ୍କ ଜୀବନର ଆଦର୍ଶଥିଲା ନିରଳସ ଜୀବନ ଯାପନ ଓ ବିଦ୍ୟାନୁରାଗ । କି ପ୍ରାଚୀନ, କି ନୂତନ, ସବୁ ପ୍ରକାର ସାହିତ୍ୟ ସେ ଅନୁଶୀଳନ କରୁଥିଲେ । ଅତ୍ୟନ୍ତ ଦରିଦ୍ର ପରିବାରରେ ଲାଳିତପାଳିତ ହୋଇ ନାନା ଆର୍ଥିକ ସଂକଟର ସମ୍ମୁଖୀନ ହୋଇ ମଧ୍ୟ ସେ ଆବାଲ୍ୟରୁ କେବଳ ବୃତ୍ତିପାଇ ବିଶ୍ୱବିଦ୍ୟାଳୟର ଡିଗ୍ରୀ କ୍ଲାସ ପର୍ଯ୍ୟନ୍ତ ଅଧ୍ୟୟନ କରି ପାରିଥିଲେ । ଜଣେ ପ୍ରଥମ ଶ୍ରେଣୀ ଛାତ୍ରର ଯେଉଁ ଗରିମା ଏବଂ ସ୍ୱାଭିମାନ ତାହା ତାଙ୍କର ଥିଲା । ତେବେ ଉତ୍କଟ ଦାରିଦ୍ର୍ୟ ଓ ଅବହେଳାର ଶରବ୍ୟ ହୋଇଥିବା ଯୋଗୁ ସାରାଜୀବନ ସେ କିପରି ଏକ ହୀନମନ୍ୟତାର ଗ୍ଲାନି

ମଧ୍ୟରେ କଷ୍ଟ ପାଉଥିଲେ । "ସୁଅ ମୁହଁର ପତର" ହେଉଛି ତାଙ୍କର ଆତ୍ମଜୀବନୀ । ଜଣେ ସାଧକର ଜୀବନକାହାଣୀ ଅତ୍ୟନ୍ତ ମାର୍ମିକ ଭାବରେ ଏଥିରେ ବର୍ଣ୍ଣିତ ହୋଇଛି ।

## ସୁଅ ମୁହଁରେ ପତ୍ର

ନିଜ ବିଷୟରେ ଆତ୍ମଚରିତର ଉପସଂହାରରେ ଶ୍ରୀଧରବାବୁ ଲେଖିଛନ୍ତି—

ମୋର ଜୀବନକୁ ସୁଅ ମୁହଁରେ ଭାସି ଯାଉଥିବା ପତ୍ର ଭଳି ମନେ କରି ଆସିଅଛି । ଲକ୍ଷ୍ୟହୀନ ଭାବରେ କେତେବେଳେ କେଉଁଆଡ଼େ ଭାସି ଯାଉଛି ତାହାର ସ୍ଥିରତା ନାହିଁ । ପ୍ରଥମ ବିଶ୍ୱଯୁଦ୍ଧ କାଳରେ କିରଣୀ ହୋଇ ମେସୋପଟାମିଆ ଯିବାକୁ ଚେଷ୍ଟା କରି ନାବାଳକ ହେତୁ ବିଫଳ ହୋଇଥିଲି । ଶ୍ରୀଯୁକ୍ତ ଲକ୍ଷ୍ମୀନାରାୟଣ ସାହୁଙ୍କ ସାହାଯ୍ୟରେ ରେଙ୍ଗୁନର ପ୍ରସିଦ୍ଧ ଓଡ଼ିଆ ବ୍ୟବସାୟୀ G.S Behera ମୋତେ କାଚ ଶିଳ୍ପ ଶିଖିବା ପାଇଁ ଜାପାନ ପଠାଇବାକୁ ଆଶା ଦେଇଥିଲେ ହେଁ କୌଣସି କାରଣରୁ ତାହା ସମ୍ଭବ ହୋଇ ପାରି ନଥିଲା । ଭାରତ ସେବକ ସମିତିର ସଭ୍ୟ ହେବା ପାଇଁ ଚେଷ୍ଟା କରିଥିଲି । ସେତେବେଳକୁ ମୁଁ ଗ୍ରାଜୁଏଟ୍ ହୋଇ ନ ଥିବାରୁ ଅଯୋଗ୍ୟ ବିବେଚିତ ହୋଇଥିଲି । ଏହିପରି କେତେ ଆଡ଼େ ଯେ ବିଫଳ ହୋଇଛି ତାହା କହିହେବ ନାହିଁ । ଶିକ୍ଷକ ହେବା ପାଇଁ ଯୋଗ୍ୟତା ଅର୍ଜନ କରିବା ନିମନ୍ତେ ପ୍ରଗାଢ଼ ଉଦ୍ୟମ କରି ତାହାହିଁ ହେଲି । ଏ କ୍ଷେତ୍ରରେ ମଧ୍ୟ ମୋତେ ନାନା ସ୍ଥାନକୁ ଯିବାକୁ ପଡ଼ିଥିଲା । ପରି-ଶେଷରେ କଟକରେ ଲାଗିଯାଇଅଛି । କାହାର ଇଙ୍ଗିତରେ କେଉଁ ଆଡ଼କୁ ମୋର ଜୀବନ ରୂପକ ପତ୍ରଟି ଭାସି ଭାସି ଯାଉଛି ତାହା ଜାଣିନାହିଁ । ଏବେ ଜୀବନର ଶେଷ ଅବସ୍ଥାରେ ମୁଁ ନିଜକୁ ଏକାନ୍ତ ଅସହାୟ ମନେ କରୁଅଛି । ସମୟ ସମୟରେ ମୁଁ ମନେ କରେ ମୋ ଠାରୁ ବଳି ଅସହାୟ ଜୀବଜଗତରେ ନାହିଁ । ଦିନରେ ସୂର୍ଯ୍ୟ, ରାତିରେ ଚନ୍ଦ୍ର ଦେଖାଯାଉଥିବା କୁଡ଼ିଆ ଘରେ ଧୂଳି ଶଯ୍ୟାରେ ଶୋଇବାଠାରୁ ଆରମ୍ଭ କରି ଇଷ୍ଟକ ନିର୍ମିତ ପକ୍‌କା ଘରେ ରହିଅଛି । ଶୂନ୍ୟ ଦେହରେ ପ୍ରବଳ ଶୀତ ସହିବାଠାରୁ ଆରମ୍ଭ କରି ଶତ ଶତ ଟଙ୍କାର ମୂଲ୍ୟର ଶାଲ ବ୍ୟବହାର କରିଅଛି ।

ପାଦ ଯାନରେ ଶତ ଶତ ମାଇଲ ଚାଲିବାଠାରୁ ଆରମ୍ଭ କରି ଘୋଡ଼ା ହାତୀ ପ୍ରଭୃତି ବାହନ ଓ ସାଇକେଲ, ମୋଟର, ବସ, ଏରୋପ୍ଲେନ୍ ପ୍ରଭୃତି ଯାନ ବ୍ୟବହାର କରିଛି । × × × × ମୁଁ ଅନେକ ସମୟରେ ନିଜକୁ ନିତାନ୍ତ ଦୁଃଖୀ ମନେ କରିଅଛି । କିନ୍ତୁ ମୋ ଠାରୁ ଯେ ଦୁଃଖୀ ନଥିବେ ବା ନାହାନ୍ତି, ତାହା କହି ହେବ ନାହିଁ । ବୋଧହୁଏ ଆଲୁଅ ଅନ୍ଧାର ପରି ସୁଖ ଦୁଃଖ ପରସ୍ପରର ପରିପୂରକ ଓ ଏହି ଦୁହିଁଙ୍କର ସହାବସ୍ଥିତି ଅଛି ।"

ଅଧ୍ୟାପକ ଶ୍ରୀଧର ଦାସ ଆଜୀବନ ସାଧନା କରିଛନ୍ତି ସ୍ୱଚ୍ଛଳ ହେବା ପାଇଁ । ଏକ ବୌଦ୍ଧିକ ବାତାବରଣରେ ରହି ଆନ୍ତରିକ ଭାବରେ ସରସ୍ୱତୀଙ୍କର ଆରାଧନା କରିଥିଲେହେଁ ସେ ଲକ୍ଷ୍ମୀ ଦେବୀଙ୍କୁ ପୂଜା କରିବା ପାଇଁ ଆଦୌ ଅବହେଳା କରିନାହାନ୍ତି । ତେଣୁ ଜୀବନ କ୍ଷେତ୍ରରେ ଏହି ଉଭୟ ଦେବୀଙ୍କର ଅନୁଗ୍ରହ ଲାଭ କରିଛନ୍ତି, ଏହା ନିଃସନ୍ଦେହରେ କୁହାଯାଇ ପାରିବ ।

ସାହିତ୍ୟ ସାଧନା ପାଇଁ ଉତ୍କଳର ପ୍ରାଚୀନତମ ସାରସ୍ୱତ ଅନୁଷ୍ଠାନ ଉତ୍କଳ ସାହିତ୍ୟ ସମାଜ, ଏ ଯୁଗର ଓଡ଼ିଆ ସାହିତ୍ୟ ଏକାଡେମୀ ଏବଂ ସୋଭିଯେତ ନେହେରୁ ପୁରସ୍କାର ସଂସ୍ଥା ତାଙ୍କୁ ପୁରସ୍କୃତ ଅଥବା ସମ୍ମାନିତ କରିଅଛନ୍ତି । ତଥାପି ତାଙ୍କପରି ପ୍ରତିଭାଦୀପ୍ତ ବ୍ୟକ୍ତିତ୍ୱ ଏ କ୍ଷେତ୍ରରେ ଯେପରି ଯଶସ୍ୱୀ ହେବା ଆଶା କରା ଯାଉଥିଲା, ତାହା ସେ ହୋଇପାରି ନାହାନ୍ତି ।

## ସାହିତ୍ୟିକ ଜୀବନ

ପିଲାଟି ଦିନରୁ କବିଟିଏ ହେବେବୋଲି କେତେ ସ୍ୱପ୍ନ ଦେଖୁଥିଲେ, ଲେଖନୀ ମଧ୍ୟ ଚଳାଇଥିଲେ । ମାତ୍ର "କବି ହେବା ନୋହିଲା ।" ଆତ୍ମ ଚରିତରେ ଶ୍ରୀଧର ବାବୁ ଲେଖିଛନ୍ତି–"ହାଇସ୍କୁଲରେ ପଢ଼ିଲା ବେଳୁ ଜଣେ କବି ହେବାର ଆଶା ଥିଲା । ସରସ୍ୱତୀ ପୂଜା ସମୟରେ କେତେ ଥର ଗୋଟିଏ ଲେଖାଁଏ କବିତା ରଚନା କରିଥିଲି । ସେ ଗୁଡ଼ିକ ଛପା ଯାଇଥିଲା । ଏପରିକି ଥରେ ହସ୍ତରେ ଗୋଟିଏ କବିତା ଲେଖି ତାହାକୁ ପଣ୍ଡିତ ଜଗନ୍ନାଥ ରଥଙ୍କ ଦ୍ୱାରା ସଂଶୋଧନ କରାଇଥିଲି ଓ ତାହା ଛପା ଯାଇଥିଲା । ସହକାରରେ ଏବଂ ଅନ୍ୟ ମାସିକ ପତ୍ରିକାରେ ମୋର କେତେକ କବିତା ପ୍ରକାଶ ପାଇଥିଲା । Scott ଙ୍କ Lady of the Lake କାବ୍ୟରୁ ଓଡ଼ିଆରେ ଅନୁବାଦକରି ସହକାରର ତତ୍କାଳୀନ ସମ୍ପାଦକ

ବାଳକୃଷ୍ଣ କରଙ୍କୁ ଦେଇଥିଲି । ସେ ଦୁଇଟି ସର୍ଗ ତାଙ୍କ ପତ୍ରିକାରେ ପ୍ରକାଶ କରିଥିଲେ । ପରେ ସେହି କାବ୍ୟର ଅନ୍ୟ ଏକ ପଦ୍ୟାନୁବାଦ ପ୍ରକାଶ ପାଉଥିବାର ଜାଣି ପରବର୍ତ୍ତୀ ସର୍ଗ ଗୁଡ଼ିକ ସେ ପ୍ରକାଶ କରି ନଥିଲେ । ପରେ ଅପର ଅନୁବାଦଟି 'ସର ସୁନ୍ଦରୀ' ନାମରେ ପ୍ରକାଶିତ ହୋଇଥିଲା ମୋର ଅନୁବାଦର ନାମ ଥିଲା 'ସରସୀ ସୁନ୍ଦରୀ ।' ବାସ୍ତବରେ 'ସର ସୁନ୍ଦରୀ' ଅନୁବାଦଟି ମୋ ଅନୁବାଦ ଅପେକ୍ଷା ଉଚ୍ଚକୋଟୀର ଥିଲା । ମୋର ପଦ୍ୟଲେଖା ଗୁଡ଼ିକ ନିମ୍ନସ୍ତରର ବୋଲି ମୁଁ ଅନୁଭବ କରିଥିଲି । ଏହାପରେ କବିତା ଲେଖା ଏକବାରେ ଛାଡ଼ିଦେଲି ।"

ଅବଶ୍ୟ ଏହା ପରେ ଅଧ୍ୟାପକ ଦାସ ଗଦ୍ୟ ଲେଖିବାରେ ବିଶେଷ ମନ ଦେଇଥିଲେ । ପରବର୍ତ୍ତୀ କାଳରେ ପୃଥିବୀ ବିଖ୍ୟାତ ବହୁ ଉଚ୍ଚକୋଟିର ଉପନ୍ୟାସ ଓ ସଂସ୍କୃତ ସାହିତ୍ୟର କେତେକ ସ୍ୱନାମଧନ୍ୟ ଲେଖାକୁ ସେ ଅତ୍ୟନ୍ତ ସରଳ ଓ ସାବଲୀଳ ଭାବରେ ଅନୁବାଦ କରି ଯଶସ୍ୱୀ ହୋଇଥିଲେ । ଅର୍ଥ ମଧ୍ୟ ରୋଜଗାର କରିଥିଲେ ।

## ଶ୍ରୀଧର ବାବୁଙ୍କ ବ୍ୟକ୍ତିତ୍ୱ ଓ ଆଭିମୁଖ୍ୟ

ବୟସ ତାଙ୍କ ନିକଟରେ ପରାଜୟ ସ୍ୱୀକାର କରିଥିଲା । ଅତି ପରିଣତ ବୟସରେ ସୁଦ୍ଧା ସେ କଠୋର ପରିଶ୍ରମ କରି ପାରୁଥିଲେ ଏବଂ ନିରବଚ୍ଛିନ୍ନ ଲେଖା ପଢ଼ା କରି ଆନନ୍ଦ ପାଉଥିଲେ । ସେ ଥିଲେ ଜଣେ ସାର୍ଥକ ସଂସାରୀ । ପରିବାର ମଧ୍ୟରେ ସନ୍ତାନମାନଙ୍କର ବିକଶିତ ବ୍ୟକ୍ତିତ୍ୱ ପାଇଁ ସେ ଯେପରି ଯତ୍ନବାନ ଥିଲେ, ଆର୍ଥିକ ସ୍ୱଚ୍ଛଳତା ଓ ସମୃଦ୍ଧି ପାଇଁ ତାଙ୍କର ସାଧନା ମଧ୍ୟ ଆଜୀବନ ଅତୁଟ ରହିଥିଲା । ସେ ଥିଲେ ନିଜ ହାତଗଢ଼ା ମଣିଷଟିଏ । ସେଥିପାଇଁ କାହାରି ଉପରେ କେବେହେଲେ ନିର୍ଭର କରି ନାହାନ୍ତି । ଆତ୍ମ ଚରିତରେ ଲେଖି ଯାଇଛନ୍ତି ଏଇ ଅନୁଭୂତିର କଥାଟି ଏହିପରି–"ଆତ୍ମନିର୍ଭରଶୀଳତା ମୋର ପ୍ରଧାନ ଗୁଣ ବା ଦୋଷ । ପୁତ୍ରମାନେ ଉଚ୍ଚ ବେତନ ଭୋଗୀ ହେଲେ ହେଁ ମୁଁ ସେମାନଙ୍କୁ କେବେ ସାହାଯ୍ୟ ମାଗି ନାହିଁ ।

ଏହି କାରଣରୁ ବୋଧହୁଏ ଅତ୍ୟନ୍ତ ଅମାୟିକ ଏବଂ ସ୍ନେହଶୀଳ ହେଲେହେଁ ଶ୍ରୀଧର ବାବୁ କେତେକ ପରିମାଣରେ ଅସାମାଜିକ ହୋଇ

ପଡ଼ିଥିଲେ । ନିଜ ପୁରୁଷକାର ଉପରେ ଅତ୍ୟଧିକ ଆସ୍ଥା ପୋଷଣ ହେତୁ ସଂସାର ଦୃଷ୍ଟିରେ ସେ ଜଣେ ଅଧ୍ୟାତ୍ମବାଦୀ ଥିଲେ ବୋଲି କହି ହେବ ନାହିଁ । କାରଣ ସେ କେବେ କୌଣସି ମନ୍ଦିରକୁ ଯାଇଁ ପ୍ରାର୍ଥନା କରିବା କେହି ଦେଖି ନାହିଁ । ଧ୍ୟାନ, ଧାରଣା, ତୀର୍ଥ ବ୍ରତରେ ସେ ବିଶ୍ୱାସୀ ନ ଥିଲେ । ତାଙ୍କରି ଭାଷାରେ–ଆହାର, ନିଦ୍ରା, ଭୟ, ମୈଥୁନ–ଏହି ସବୁ କାର୍ଯ୍ୟରେ ଜୀବନ ଅତିବାହିତ କରି ମୁଁ ସମୟ କଟାଇ ଦେଇଛି । ତେଣୁ ଖ୍ରୀଷ୍ଟିୟାନ ମାନଙ୍କ ପରି ଈଶ୍ୱରଙ୍କ ନିକଟରେ କ୍ଷମା ଓ ଦୟାର ପ୍ରାର୍ଥୀ ହେବା ଛଡ଼ା ମୋ ପକ୍ଷରେ ଅନ୍ୟ କି ପନ୍ଥା ଅଛି ?" ପୁନଶ୍ଚ ଧର୍ମାଚରଣ ବିଷୟରେ ତାଙ୍କର ମତ ହେଲା–"ଧର୍ମ ଅର୍ଜନ ପାଇଁ ମୁଁ କେବେ ଚେଷ୍ଟା କରି ନାହିଁ ଏବଂ ଧର୍ମ ଅର୍ଜନ କରିବାର ପନ୍ଥା କ'ଣ ତାହା ଜାଣେ ନାହିଁ । ଅନେକ ଲୋକ ତଥାକଥିତ ଧର୍ମାଚରଣ କରିଥାନ୍ତି, କିନ୍ତୁ ସେ ପ୍ରକାର ଧର୍ମାଚରଣରେ ମୋର ବିଶ୍ୱାସ ନାହିଁ । ମୁଁ କେବଳ କାର୍ଯ୍ୟ କରିବାକୁ ଚେଷ୍ଟା କରିଛି ଏବଂ ସେହି କାର୍ଯ୍ୟରେ ସଫଳ ହୁଏ ବା ବିଫଳ ହୁଏ, ତାହା ଈଶ୍ୱରଙ୍କ ନିର୍ଦ୍ଦେଶ ବୋଲି ଧରି ନେଇଛି । ଏକ ସମୟରେ ମୁଁ ପୁରୁଷକାରକୁ ବଡ଼ ବୋଲି ମନେ କରିଥିଲି । କିନ୍ତୁ ଏବେ ଈଶ୍ୱର ନିର୍ଭରଶୀଳ ହୋଇଅଛି ।

"ତ୍ୱୟା ହୃଷୀକେଶ ହୃଦିସ୍ଥିତେନ ଯଥା
ନିଯୁକ୍ତୋଽସ୍ମି ତଥା କରୋମି ।"

ବୋଧହୁଏ ଏହି ଈଶ୍ୱର ନିର୍ଭରଶୀଳତା ଜୀବନରେ ଅକ୍ଷମତା ହେତୁ ଜନ୍ମି ଅଛି ।"

ଈଶ୍ୱର ଭାବନା ଓ ଭଗବତ ପ୍ରେମ ସଂପର୍କରେ ସେ ଯେ ସତତ୍ ସନ୍ଦିଗ୍ଧଚିତ୍ତଥିଲେ, ଏଥିରେ ସନ୍ଦେହର ଅବକାଶ ନାହିଁ । ଈଶ୍ୱର ବିଶ୍ୱାସ ଯେ ଦୁର୍ବଳ ଚିତ୍ତବୃତ୍ତିର ପରିପ୍ରକାଶ, ଏପରି ଏକ ଭାବନା ତାଙ୍କର ଅଭିମାନୀ ମନକୁ ଆଚ୍ଛନ୍ନ କରି ଦେଲା ପରେ ସାମାଜିକ ଜୀବନରେ ଅନେକ ସମୟରେ ସଂଘର୍ଷ ଓ ସଂଘାତକୁ ସାଲିସ କରି ନ ପାରି ସେ ଯେ ଦୁଃଖୀ ହୋଇ ପଡ଼ିବେ, ଏପରି ଅନୁମାନ କରିବାର ଅନେକ କାରଣ ରହିଛି ।

କିନ୍ତୁ ଏ ସବୁ ସତ୍ତ୍ୱେ ତାଙ୍କର କର୍ମଯୋଗୀ ବ୍ୟକ୍ତିତ୍ୱ ଏବଂ ଆଜୀବନ ସାଧନା ତାଙ୍କ ସଂସ୍ପର୍ଶରେ ଆସିଥିବା ଲୋକେ ସବୁ ଦିନ ପାଇଁ ସ୍ମରଣ କରୁଥିବେ ।



# ଅର୍ଦ୍ଧଶତାବ୍ଦୀର ବରିଷ୍ଠ ସାଧକ

ଅଧ୍ୟାପକ ଗୌରୀକୁମାର ବ୍ରହ୍ମା

ଦୀର୍ଘ ପଚାଶ ବର୍ଷ ଧରି ଓଡ଼ିଆ ସାହିତ୍ୟର ନିରବଚ୍ଛିନ୍ନ ସାଧକ ଅଧ୍ୟାପକ ଶ୍ରୀଧର ଦାସ ଆଜି ଆଉ ଆମ ଗହଣରେ ନାହାନ୍ତି । ୧୯୪୧ ଶ୍ରୀପଞ୍ଚମୀ ଦିନ ବାଣପୁର ନିବାସୀ, ଉତ୍କଳ ବିଖ୍ୟାତ କବି ଗୋଦାବରୀଶ ମହାପାତ୍ରଙ୍କର ଜାମାତା ହେବାର ସୌଭାଗ୍ୟ ମୁଁ ଲାଭ କରିଥିଲି । ତାହାର ପ୍ରାୟ ଚାରିମାସ ପରେ ମୁଁ ବାଣପୁର ହାଇସ୍କୁଲରେ ଶିକ୍ଷକରୂପେ ଯୋଗଦାନ କଲି । ସେତେବେଳେ ଉଚ୍ଚ ବିଦ୍ୟାଳୟମାନଙ୍କ ମଧ୍ୟରେ ବାଣପୁରର ଗୌରବ ଥିଲା ଅସାଧାରଣ । ସ୍ୱନାମଧନ୍ୟ କବି, ଜନନାୟକ, ସାହିତ୍ୟ ସ୍ରଷ୍ଟା ଏବଂ ଦେଶ ସେବକ ପଣ୍ଡିତ ଗୋଦାବରୀଶ ମିଶ୍ର ଥିଲେ ସେ ବିଦ୍ୟାଳୟର ପ୍ରାଣସ୍ୱରୂପ । ମୁଁ ତାଙ୍କରି ଶୁଭଦୃଷ୍ଟି ଲାଭକରି ଶିକ୍ଷକରୂପେ ସେଠାରେ ଯୋଗଦେଲି ଏବଂ ବର୍ଷାଧିକ କାଳ ରହିଲି । ଆଜିର ସୁପ୍ରିମ୍‌କୋର୍ଟର ବିଚାରପତି ଶ୍ରୀଯୁକ୍ତ ରଙ୍ଗନାଥ ମିଶ୍ର ସେତେବେଳେ ସେଠାରେ ଦଶମ ଶ୍ରେଣୀର ଛାତ୍ର । ଓଡ଼ିଶାର ଅନେକ କୃତବିଦ୍ୟ ବ୍ୟକ୍ତି ବାଣପୁର ବିଦ୍ୟାଳୟର ଶିକ୍ଷକ ଭାବରେ ସୁନାମ ଅର୍ଜନ କରିଥିଲେ । ବିଦ୍ୟାଳୟର ଚତୁର୍ଦ୍ଦିଗରେ ମନୋରମ ପ୍ରାକୃତିକ ଦୃଶ୍ୟ ଏବଂ ବିଦ୍ୟାଳୟ ମଧ୍ୟରେ ଉଚ୍ଚକୋଟୀର ଶିକ୍ଷାଦାନ, ଅନୁଷ୍ଠାନଟିକୁ ସମଗ୍ର ଓଡିଶାରେ ଜନପ୍ରିୟ କରାଇ ଦେଇଥିଲା । ମନେଅଛି, କଟକ ନିବାସୀ କେତେଜଣ ବରିଷ୍ଠ ରାଜକର୍ମଚାରୀଙ୍କ ପୁଅ କଟକରେ ଭଲ ଭାବରେ ପଢୁ ନଥିବାରୁ ପଢିବାପାଇଁ ବାଣପୁରକୁ ପଠାଯାଉଥିଲେ ।

ବିଦ୍ୟାଳୟର ପ୍ରାୟ ଦଶଜଣ ଶିକ୍ଷକଙ୍କ ମଧ୍ୟରେ ମୋର ବନ୍ଧୁ ଶ୍ରୀଧର ଦାସ ଥିଲେ ଛାତ୍ରପ୍ରିୟ ଏବଂ ଜନପ୍ରିୟ ମଧ୍ୟ । ଗୋଟିଏ ଦୃଷ୍ଟିରୁ

ଦେଖିଲେ ମୋର ଶ୍ୱଶୁର ଗୋଦାବରୀଶ ମହାପାତ୍ରଙ୍କର ସେ ଥିଲେ ବନ୍ଧୁ । ତେଣୁ ତାଙ୍କପ୍ରତି ମୋର ସ୍ୱତନ୍ତ୍ର–ସମ୍ମାନ ରହିବା ସ୍ୱାଭାବିକ । ଅନ୍ୟ ଦୃଷ୍ଟିରୁ ଦେଖିଲେ, ମୁଁ ତାଙ୍କର ତରୁଣ ସହକର୍ମୀ ଥିଲି । ତେଣୁ ଶିକ୍ଷକ-ବନ୍ଧୁ-ଭାବରେ ବହୁ ବିଷୟରେ ଆଳାପ ଆଲୋଚନା ହେଉଥିଲା ।

ମୋର ଏପର୍ଯ୍ୟନ୍ତ ଅନେକ କଥା ଗତକାଲିର ଘଟଣାପରି ମନେ ଅଛି । ସେ ଥିଲେ ଛାତ୍ର ସମାଜର ପିତୃତୁଲ୍ୟ । ପାଠ ସହିତ ସେ ଶାଠ ମଧ୍ୟ ଜାଣିଥିଲେ । ସେଥିରୁ ଗୋଟିଏ ହେଉଛି, ବିନା ମୂଲ୍ୟରେ ହୋମିଓ-ପାଥିକ୍ ଔଷଧ ବିତରଣ । ସୂର୍ଯ୍ୟୋଦୟ ପୂର୍ବରୁ ନିତ୍ୟକର୍ମ ଶେଷକରି, ସ୍କୁଲ ପାଠ୍ୟ ଉପରେ ଦୃଷ୍ଟିପାତ କରୁଥିଲେ । ସେ ଥିଲେ ଏକାନ୍ତ ନିରଳସ । ସେଭଳି ନିଗଡ଼ଘର ଲୋକ ଆଜିକାଲି ଅତ୍ୟନ୍ତ ଦେଖାଯାନ୍ତି । ଭଗବାନଙ୍କ ଠାରେ ତାଙ୍କର ଥିଲା ଗଭୀର ବିଶ୍ୱାସ । ଖର୍ଚ୍ଚ କରିବା ପାଇଁ ତାଙ୍କର କୁଣ୍ଠା ନଥିଲା । କିନ୍ତୁ ନୀତି ଶାସ୍ତ୍ରରେ ଯେଉଁ ମିତବ୍ୟୟିତା କଥା କୁହା-ଯାଇଛି, ସେ ଥିଲେ ତାହାର ପରମ ଉପାସକ । ଖାଦ୍ୟଦ୍ରବ୍ୟ ଭେଜି ଭାତରେ ପ୍ରଚୁର ପରିମାଣରେ ଫିଙ୍ଗାଯାଏ, ବିନଷ୍ଟ ହୁଏ । ସେ ଥିଲେ ତାହାର ଘୋର ବିରୋଧୀ । ପିଲମାନଙ୍କୁ ଦେଖିଲେ ସରଳ ଜୀବନ ଯାପନ କରି ଉଚ୍ଚ ଚିନ୍ତା କରିବାପାଇଁ ପରାମର୍ଶ ଦେଉଥିଲେ ।

ଶିକ୍ଷକ ଜୀବନର ମହନୀୟତା ପ୍ରତି ସେ ଥିଲେ ସଚେତନ । ଇଂରାଜୀ ସାହିତ୍ୟରେ ତାଙ୍କର ଗଭୀର ପ୍ରବେଶ ଥିଲା । ମନେଅଛି, ଅନେକ ଇଂରାଜୀ କବିତା ସେ ଓଡ଼ିଆରେ ଅନୁବାଦ କରିଥିଲେ । ନିଜର ଅନୁବାଦ ଗୁଡ଼ିକୁ ସହଶିକ୍ଷକ ମାନଙ୍କୁ ପଢି ଶୁଣାଉଥିଲେ । ସେମାନଙ୍କର ମତାମତ ଲୋଡୁଥିଲେ । ଯଦିଓ ବେଳେବେଳେ ପ୍ରତିକୂଳ ମତ ପ୍ରକାଶ ପାଉଥିଲା, ସେ ଆଦୌ ବିରକ୍ତ ହେଉନଥିଲେ । ପ୍ରାଚୀନ ଓଡ଼ିଆ ସାହିତ୍ୟ ମଧ୍ୟ ତାଙ୍କର ପ୍ରିୟପାଠ୍ୟ ଥିଲା । ହାତୀମୁଣ୍ଡା ପୋଖରୀ ଘେରିପଟେ ଶିକ୍ଷକ ମାନଙ୍କର ବସାଗୃହ ଥିଲା । ତେଣୁ ସନ୍ଧ୍ୟାବେଳେ ଶିକ୍ଷକମାନଙ୍କର ମିଳନ ଏବଂ ଆଳାପ ଥିଲା ଅତି ସାଧାରଣ କଥା । ଦୈନିକ 'ସମାଜ' ପତ୍ରିକା ସେ ବରାବର ପଢୁଥିଲେ । ତାଙ୍କର ଜୀବନସମୟାନୁବର୍ତ୍ତୀ ଥିବାରୁ ସେ ଶେଷ-ପର୍ଯ୍ୟନ୍ତ ରୁଗ୍ଣ ନ ଥିଲେ ।

ସ୍ୱର୍ଗତ ଶ୍ରୀଧର ବାବୁଙ୍କ ପାଇଁ ସ୍ମରଣିକା ପ୍ରକାଶନ ଅବକାଶରେ ଅନେକଙ୍କର ପ୍ରସ୍ତାବ ହେଉଛି, ତାଙ୍କର ସମସ୍ତ ରଚନା ଗୋଟିଏ ଗ୍ରନ୍ଥାବଳୀ ରୂପେ ପ୍ରକାଶ କରାଯାଉ । ଅନ୍ତତଃ ଦଶହଜାର ଟଙ୍କାର ଗୋଟିଏ 'ସ୍ଥାୟୀଜମା' କୌଣସି ବ୍ୟାଙ୍କରେ କରାଯାଉ । ତହିଁରୁ ପ୍ରତିବର୍ଷ ଯେଉଁ ସୁଧ ଆସିବ, ବାଣପୁର ହାଇସ୍କୁଲର କୃତୀ ଛାତ୍ରଙ୍କୁ ତାହା ପୁରସ୍କାର ରୂପେ ଦିଆଯାଉ । ତାଙ୍କର ଗୋଟିଏ ତୈଳଚିତ୍ର ଉତ୍କଳ ସାହିତ୍ୟ ସମାଜରେ ରଖାଯାଉ ଏବଂ ବାଣପୁର ହାଇସ୍କୁଲରେ ମଧ୍ୟ ଅନୁରୂପ ବ୍ୟବସ୍ଥା କରାଯାଉ । ତାଙ୍କର ଶେଷ ଜୀବନ କଟକ ଖ୍ରୀଷ୍ଟ କଲେଜରେ ଯାପିତ ହୋଇଥିବାରୁ ସ୍ମୃତିରକ୍ଷା ନିମନ୍ତେ କୌଣସି ପଦକ୍ଷେପ ସେଠାରେ ମଧ୍ୟ ନିଆଯାଉ ।



# ମନେ ଅଛନ୍ତି—ମନେ ରହିବେ

ଶ୍ରୀ ବ୍ରଜ କିଶୋର ନାୟକ
ପୂର୍ବତନ ବିଧାୟକ, ପାଟକୁରା

ସ୍ୱର୍ଗତ ଅଧ୍ୟାପକ ଶ୍ରୀଧର ବାବୁଙ୍କ ଶ୍ରାଦ୍ଧ ବାର୍ଷିକୀ ଉପଲକ୍ଷେ ଏକ ସ୍ମରଣିକା ପ୍ରକାଶନରେ ଉଦ୍ୟମ ହିଁ ଅଭିନନ୍ଦନୀୟ । ତାଙ୍କ ଭଳି ଗୁଣୀ, ଶିକ୍ଷାବିତ୍, ମାନବବାଦୀ, ସର୍ବୋପରି ଆଦର୍ଶ ଶିକ୍ଷକଙ୍କୁ ଶ୍ରଦ୍ଧାର ସହିତ ସ୍ମରଣ କରିବା ଉତ୍ତର ଦାୟାଦ ମାନଙ୍କର ପୂଜ୍ୟପୂଜାର ଏକ ଦୃଷ୍ଟାନ୍ତ ।

୧୯୪୮ ମସିହା କଥା । କୋରୁଆ ହାଇସ୍କୁଲ ସେତେବେଳକୁ ମୋଟେ ୪ ବର୍ଷର ଶିଶୁ ଅନୁଷ୍ଠାନ । ମୁଁ କୋରୁଆ ହାଇସ୍କୁଲରେ ସହକାରୀ ଶିକ୍ଷକ ଭାବେ ଯୋଗ ଦେଇଥାଏ । ନୂଆ ନୂଆ କଲେଜ ଛାଡ଼ି ସ୍ୱାଧୀନତାର ପୁଲକିତ ଅନୁଭବରେ ପାଗଳ ହୋଇ ଦେଶ ଓ ଦଶର ଭବିଷ୍ୟତ ଗଢ଼ିବା ସ୍ୱପ୍ନ ନେଇ ଆମେ କେତେକ ଅନ୍ୟବୃତ୍ତିକୁ ଏଡ଼ାଇ ଦେଇ ବାଛି ନେଇଥିଲୁ ଶିକ୍ଷକତା । ସେହି ଆଦ୍ୟ ଶିକ୍ଷକ ଜୀବନରେ ଶ୍ରୀଧର ବାବୁଙ୍କ ଭଳି ଆଦର୍ଶ ଶିକ୍ଷକଙ୍କ ସାହଚର୍ଯ୍ୟ ଲାଭକରି ମୁଁ ନିଜକୁ ଧନ୍ୟ ମନେ କରିଥିଲି ।

କୋରୁଆ ସ୍କୁଲରେ ତାଙ୍କର ରହଣୀ କାଳ ବୋଧେ ଆଠ ଦଶ ମାସ ହେବ, ମୋର ପୁଣି ତାଙ୍କସହ, ସହକର୍ମୀ ହିସାବରେ ସମ୍ପର୍କ ଅଳ୍ପ କେତେଦିନ ମାତ୍ର । ହେଲେ ଉକ୍ତ ସ୍କୁଲ ଗଠନ ଦିଗରେ କିଞ୍ଚିତ ଜଡ଼ିତ ଥିବାରୁ ବିଭିନ୍ନ ଅବସରରେ, ଶ୍ରୀଧର ବାବୁ ଖ୍ରୀଷ୍ଟ କଲେଜରେ ଥିବା ବେଳେ ସ୍କୁଲର ବିଭିନ୍ନ ଉନ୍ନତିମୂଳକ କାର୍ଯ୍ୟରେ ତାଙ୍କ ସହିତ ମିଳିତ ହେବାର ସୁଯୋଗ ମୁଁ ପାଇଥିଲି । ମୋର ପରବର୍ତ୍ତୀ ଦୀର୍ଘ ୧୫ ବର୍ଷ ଶିକ୍ଷକ ଜୀବନରେ ସେ ମହାଶୟଙ୍କ ପ୍ରଭାବ ଏଡ଼ାଇ ପାରିନାହିଁ ।

କୋରୁଆ ହାଇସ୍କୁଲର ଜନ୍ମ ୧୯୪୪ ମସିହାରେ–୧୯୩୦ ମସିହାର ମାଇନର ସ୍କୁଲର ପରିସର ମଧ୍ୟରେ । ସେତେବେଳେ ଉକ୍ତ ଅନୁଷ୍ଠାନ କେବଳ ପାଟକୁରା ନୁହେଁ, ମହାକାଳପଡ଼ା ଓ ରାଜନଗରର ଏକମାତ୍ର ଶିକ୍ଷା ଅନୁଷ୍ଠାନ । ପାଟକୁରା ଭଳି ନଈ ନାଳ ଘେରା ବନ୍ୟା ବାତ୍ୟା ମରୁଡ଼ି ପ୍ରପୀଡ଼ିତ ଦୁର୍ଗମ ଅଞ୍ଚଳରେ ଏଭଳି ଅନୁଷ୍ଠାନର କଳ୍ପନା ସ୍ୱାଧୀନତାର ପୂର୍ବବର୍ତ୍ତୀ ସମୟରେ କିଭଳି ଆୟାସସାଧ୍ୟ ତାହା କେବଳ ଅନୁଭବୀ ହିଁ ଉପଲବ୍ଧି କରିପାରିବ । ସବୁଠାରୁ ବଡ଼ ସମସ୍ୟା ଥାଏ ଉପଯୁକ୍ତ ଶିକ୍ଷକଙ୍କ ଅଭାବ, ଟ୍ରେନିଂ ପ୍ରାପ୍ତ ଅଭିଜ୍ଞ ଶିକ୍ଷକଙ୍କ କଥା ଛାଡ଼ ସାଧାରଣ ଗ୍ରାଜୁଏଟ୍ ଶିକ୍ଷକଟିଏ ପାଇବା ମଧ୍ୟ କାଠିକର ପାଠ । ଉପଯୁକ୍ତ ଶିକ୍ଷକ ଅଭାବରୁ ସମୟ ସମୟରେ ଅନୁଷ୍ଠାନରେ ନାନା ବିଶୃଙ୍ଖଳା ପ୍ରକାଶ ପାଇଥାଏ । ୧୯୪୮ ମସିହା ଥାଏ କୋରୁଆ ପକ୍ଷେ ଏକ ଘଡ଼ିସନ୍ଧି ସମୟ । ଏପର୍ଯ୍ୟନ୍ତ ଅନୁଷ୍ଠାନରୁ ୪ ଜଣ ପ୍ରଧାନ ଶିକ୍ଷକ ବିଦାୟ ନେଇଥାନ୍ତି । କୋରୁଆ ଭଳି ଏକ ଅନୁନ୍ନତ ଦୁର୍ଗମ ଅଞ୍ଚଳରେ ସ୍ୱଳ୍ପ ବେତନରେ ଏକ ଘରୋଇ ଅନୁଷ୍ଠାନରେ ଶିକ୍ଷକତା କରିବାପାଇଁ ରାଜିହେବ ବା କିଏ ? ନିକଟରେ ନୂଆହୋଇ ଗଢି ଉଠିଥିବା ପ୍ରତିଯୋଗୀ ସ୍କୁଲକୁ ଏ ପରିସ୍ଥିତି ବେଶ୍ ଖୋରାକ୍ ଯୋଗାଉଥାଏ । ଠିକ୍ ଏଭଳି ଏକ ସଙ୍କଟମୟ ପରିସ୍ଥିତିରେ ଶ୍ରୀଧର ବାବୁ ଜଗତ୍‌ସିଂହପୁର ହାଇସ୍କୁଲ ଛାଡ଼ି ଯୋଗଦେଲେ କୋରୁଆର ପ୍ରଧାନ ଶିକ୍ଷକ ଭାବେ । ସେ ମହାଶୟଙ୍କ ଯୋଗଦାନ ଯେପରି ଆକସ୍ମିକ, ସେପରି ସ୍ମରଣୀୟ ମଧ୍ୟ । ତାଙ୍କର ଯୋଗଦାନ ଫଳରେ ଛାତ୍ର, ଶିକ୍ଷକ, ଅଭିଭାବକ ଓ ଉଦ୍ୟୋକ୍ତା ମାନଙ୍କ ମଧ୍ୟରେ ଗୋଟାଏ ଉତ୍ସାହ, ଆତ୍ମପ୍ରତ୍ୟୟ ସୃଷ୍ଟି ହେଲା– ଅନୁଷ୍ଠାନର ଭବିଷ୍ୟତ ସ୍ଥିତି ସମ୍ପର୍କରେ । ଏଭଳି ପ୍ରବୀଣ ଶିକ୍ଷକ ମିଳିବା ଏହି ଅନୁଷ୍ଠାନ ପ୍ରତି ଭଗବାନଙ୍କର ଏକ ଆଶୀର୍ବାଦ ବୋଲି ଆମ୍ଭେ-ମାନେ ମନେକଲୁ । ହେଲେ ମନରେ ପ୍ରଶ୍ନ ଆସିଥିଲା, ଜଗତ୍‌ସିଂହପୁରର ସୁଖ ସୁବିଧା ଥିବା ଏକ ପ୍ରତିଷ୍ଠିତ ପୂର୍ଣ୍ଣାଙ୍ଗ ସ୍କୁଲ ଛାଡ଼ି କୋରୁଆଭଳି ଶିଶୁ ଅନୁଷ୍ଠାନକୁ ନିଜର କର୍ମକ୍ଷେତ୍ର ହିସାବରେ ସେ ବାଛିନେଲେ କାହିଁକି ? ତା ମୂଳରେ ନଥିଲା ଅର୍ଥ, ନଥିଲା ସୁଖ ସୁବିଧା, ଥିଲା ନୂଆ ନୂଆ ଶିକ୍ଷାନୁଷ୍ଠାନ ଗଢିବାର ପ୍ରବଳ ଆକାଂକ୍ଷା । କୋରୁଆର ପରିବେଶ ଏ ଦିଗରେ ତାଙ୍କୁ ବେଶ୍ ଖୋରାକ ଯୋଗାଇଥିଲା । ଯାହାଫଳରେ ତାଙ୍କର ରହଣୀ କାଳ

ମଧ୍ୟରେ ଶିଶୁ ଅନୁଷ୍ଠାନଟି ନାନା ପ୍ରତିବନ୍ଧକ ଏଡ଼ାଇ ଉନ୍ନତି ଦିଗରେ ବେଶ୍ ଆଗେଇ ଚାଲିଲା ।

ପ୍ରଧାନଶିକ୍ଷକ ହିସାବରେ ଛାତ୍ର, ଶିକ୍ଷକ ଓ ଅନ୍ୟାନ୍ୟ କର୍ମଚାରୀଙ୍କୁ ନିଜର କରି ଅନୁଷ୍ଠାନର ଉନ୍ନତି ସାଧନରେ ନିୟୋଜିତ କରିବା ତାଙ୍କର ଥିଲା ଏକ ଐଶ୍ୱରିକ ପ୍ରତିଭା । ସୁପରିଚାଳନା ପାଇଁ କେବେହେଲେ ସେ କ୍ଷମତାର ଉପଯୋଗ କରିନାହାଁନ୍ତି— ନାଲି ଆଖି ଦେଖାଇବା, ଉପସ୍ଥାନ ବହିରେ ନାଲିଛକି ମାରିବା ପରିବର୍ତ୍ତେ ନାଲିଓଠର ହସ ତାଙ୍କପ୍ରତି ସହକର୍ମୀ ମାନଙ୍କୁ କରିଦେଇଥିଲା ଅତ୍ୟନ୍ତ ଅନୁଗତ । ମୌଖିକ ବା କାଗଜ କଲମରେ କୌଣସି କୈଫିୟତ କାହାକୁ ମାଗିନାହାନ୍ତି, ତଥାପି ଶିକ୍ଷକମାନଙ୍କର ଉପସ୍ଥାନ ଠିକ୍ ସମୟରେ ହୁଏ ଓ ପାଠପଢ଼ା ଠିକ୍ ଚାଲେ । ଏହାଥିଲା ସେ ମହାଶୟଙ୍କ କର୍ତ୍ତବ୍ୟନିଷ୍ଠା, ଚରିତ୍ରବତ୍ତା ଓ ଅକୁଣ୍ଠ ସ୍ନେହ ଶ୍ରଦ୍ଧାର ଫଳ ।

ସେ ଇଂରାଜୀ, ଓଡ଼ିଆ, ଇତିହାସ, ଭୂଗୋଳ, ସଂସ୍କୃତ ଆଦି ବହୁ ବିଷୟରେ ପ୍ରବୀଣ ଥିଲେ । ମାତ୍ର ସାହିତ୍ୟ ପ୍ରତି ତାଙ୍କର ଥିଲା ବିଶେଷ ଅନୁରାଗ । ପରେ ସାହିତ୍ୟ ଶିକ୍ଷା ତାଙ୍କର ବୃତ୍ତି ହୋଇଥିଲା । ମାତ୍ର ସ୍ୱତନ୍ତ୍ର ଆଗ୍ରହ ଥିଲା ବ୍ୟାକରଣ ଶିକ୍ଷାରେ । ବ୍ୟାକରଣ ଶିକ୍ଷା ସାଧାରଣତଃ ନୀରସ ବୋଲି ବିବେଚିତ ହୋଇଥାଏ । ମାତ୍ର ଶ୍ରୀଧର ବାବୁ ଏହାକୁ କରିପାରିଥିଲେ ରସସ୍ନିଗ୍ଧ ।

କୋରୁଆର ପ୍ରାକୃତିକ ପରିବେଶ, ସେହି ପୁଣ୍ୟତୋୟା ଚିତ୍ରୋତ୍ପଳା ନଦୀ, ମାର୍କଣ୍ଡ ଋଷିଙ୍କ ଆଶ୍ରମ, ପଞ୍ଚସଖା ଗଦାଧର ପୀଠ, ସେହି ବେଲମାଳ ଓ ଆମ୍ରକାନନ ତାଙ୍କୁ ଆକୃଷ୍ଟ କରିଥିଲା । ଶ୍ରୀଧରବାବୁଙ୍କ ସୁପରିଚାଳନା ଓ ଅନ୍ୟାନ୍ୟ ବନ୍ଧୁଙ୍କ ସହଯୋଗ ଲାଭ କରି ଅନୁଷ୍ଠାନଟି ଗଢ଼ିଉଠିଥିଲା ଏକ ଆଶ୍ରମଭଳି । ସେହି ଶିକ୍ଷାଶ୍ରମର ଆଚାର୍ଯ୍ୟ ଥିଲେ ସାଧକ ଶ୍ରୀଧର ବାବୁ । ମାତ୍ର ସେ ଆକର୍ଷଣ ତାଙ୍କୁ ବେଶି ଦିନ ରଖିପାରିଲା ନାହିଁ । ପିଲାମାନଙ୍କ ଭବିଷ୍ୟତ ଶିକ୍ଷାକୁ ଆଖିଆଗରେ ରଖି ଖ୍ରୀଷ୍ଟ କଲେଜର ଅଧ୍ୟାପକ ଭାବେ ଯୋଗଦେବାର ସେ ନିଷ୍ପତ୍ତି ନେଲେ । ମାତ୍ର ସେଠାକାର କଲେଜ ଆବହାଓ୍ୱା, ସହରୀ ବାତାବରଣ ତାଙ୍କ ରୁଚିର ଅନୁକୂଳ ବୋଧ ହେଲା ନାହିଁ । ତେଣୁ ପୁଣି ସେହି ସାଧନାପୀଠକୁ ଫେରିବାକୁ କେତେଥର ମନସ୍ଥ କରିଛନ୍ତି ।

ମାତ୍ର, ଆସିପାରି ନାହାଁନ୍ତି । ହେଲେ, ଅନୁଷ୍ଠାନରେ ଉନ୍ନତି କଳ୍ପେ ତାଙ୍କର ସାହାଯ୍ୟ ସହାନୁଭୂତି ସବୁବେଳେ ଅତୁଟ ରହିଛି । କେତେବେଳେ କୌଣସି କାରଣରୁ ଦେଖାହେଲେ ସେ ପଚାରୁଥିଲେ– ଗୋଟି ଗୋଟି କରି ସେତବେଳର ସହକର୍ମୀଙ୍କର ଭଲମନ୍ଦ, ସୁଖଦୁଃଖ କଥା । ସେହି ପ୍ରାକୃତିକ ପରିବେଶ ଚିତ୍ରୋତ୍ପଳା ନଈକୂଳରେ ସାନ୍ଧ୍ୟ ଭ୍ରମଣ ଓ ମାର୍କଣ୍ଡ ଋଷି ଆଶ୍ରମ କଥା । କୋରୁଆକୁ ସେ ଛାଡ଼ିଥିଲେ ମାତ୍ର କୋରୁଆ ତାଙ୍କୁ ଛାଡ଼ି ପାରିନଥିଲା । ନିଜର ପ୍ରିୟ ଛାତ୍ରମାନଙ୍କୁ ପଠାଉଥିଲେ ସେହି ଅନୁଷ୍ଠାନକୁ ଶଙ୍ଖୋଳି ଆସିବାକୁ, ଅନୁଷ୍ଠାନର ବିକାଶରେ ସାହାଯ୍ୟ କରିବାକୁ । ଅଧ୍ୟାପକ ଗୋପାଳ ମିଶ୍ର ସେହିଭଳି ଛାତ୍ରମାନଙ୍କ ଭିତରୁ ଜଣେ ଯିଏକି ତାଙ୍କରି ପ୍ରେରଣାରେ ଛନ୍ଦି ହୋଇ ରହି ଯାଇଥିଲେ ଏହି ଶିକ୍ଷାନୁଷ୍ଠାନ ସହିତ–"କଳାବୁଦା ଜନ୍", "ଜଟିଆ କେଳା" ଓ "ବନ ମର୍ମରକୁ ଅପେକ୍ଷା କରି ।"

ଶ୍ରୀଧର ବାବୁ ଗ୍ଲିଗଲ ପରେ କୋରୁଆ ଶିକ୍ଷାନୁଷ୍ଠାନ ହରାଇଛି ଜଣେ ପରମ ଶୁଭେଚ୍ଛୁକୁ । ତେବେ ଜୀବନଯାବତ୍ ଶ୍ରୀଧରବାବୁ ଯେଉଁ ଅକୁଣ୍ଠ ଉଦାର ସ୍ନେହ ବିତରଣ କରିଯାଇଛନ୍ତି, ତା ପାଇଁ ଅନେକେ ଜୀବନକୁ ଧନ୍ୟ ମନେ କରୁଛନ୍ତି । ସେଥିପାଇଁ ସେ ମନେ ଅଛନ୍ତି ଓ ମନେ ରହିବେ ।

ଆଜି ତାଙ୍କ ଶ୍ରାଦ୍ଧବାସରେ ଶ୍ରଦ୍ଧାର ସହିତ ତାଙ୍କର ସ୍ମୃତି ସ୍ମରଣ କରିବା ସଙ୍ଗେ ସଙ୍ଗେ ମୁଁ ଆଶା କରୁଛି ଅଧ୍ୟାପକ ଡଃ ଶ୍ରୀନିବାସ ବାବୁଙ୍କ ଭଳି ଅନ୍ୟମାନେ ମଧ୍ୟ ସ୍ୱର୍ଗତ ଦାସଙ୍କର କୃତୀର ଯଥାର୍ଥ ମୂଲ୍ୟାୟନ ପାଇଁ ଉଦ୍ୟମ ଆରମ୍ଭ କରିବେ । ଏହା ହେବ ତାଙ୍କ ପ୍ରତି ପ୍ରକୃତ ଶ୍ରଦ୍ଧାଞ୍ଜଳି ।



# ବିଦଗ୍ଧ–ବସୁନ୍ଧରା

**ପ୍ରଫେସର ଡକ୍ଟର କାହ୍ନୁଚରଣ ମିଶ୍ର**
ନିର୍ଦ୍ଦେଶକ ଓଡ଼ିଶା ସଂସ୍କୃତି ପରିଷଦ, ଭୁବନେଶ୍ୱର-୨

ସାଧନାର ପଥ ଚିରକାଳ ବନ୍ଧୁର । ପୁଣି 'ସିଦ୍ଧି'ର ରାସ୍ତା କର୍ସ୍ମିନ୍ କାଳେ 'ସିଧା' ହୁଏ ନାହିଁ । ତେଣୁ ସାଧକକୁ ସିଦ୍ଧିର ଅଧିକାରୀ ହେବାପାଇଁ ବହୁ ଦୁଃଖ, ଯନ୍ତ୍ରଣା ସହ୍ୟ କରିବାକୁ ପଡ଼ିଥାଏ । ମାନବ ସଭ୍ୟତାର ଆଦିକାଳଠାରୁ ଆରମ୍ଭ କରି ଆଜି କାଳ ଯାଏ, ଜୀବନ ବହୁ ବିଚିତ୍ର ବିବର୍ତ୍ତନ ଓ ରୂପାନ୍ତର ଭିତର ଦେଇ ଗଡ଼ି ଆସିଥିଲେ ମଧ୍ୟ 'ସାଧନା–ସିଦ୍ଧି'ର ଏହି ଆତ୍ମଦର୍ଶନ ମଧ୍ୟରେ ବିଶେଷ କୌଣସି ମୌଳିକ ପରିବର୍ତ୍ତନ ଘଟିନାହିଁ । ସେଥିପାଇଁ ପୁରାଣ–ଇତିହାସରେ ଆମେ ଯେତେବେଳେ କୌଣସି ବିଶିଷ୍ଟ ଚରିତ୍ରର ଦୁଃଖ–ଯନ୍ତ୍ରଣା ଅନୁଭବ କରୁ, ସେତେବେଳେ ସଭ୍ୟତାର ଏ ମୌଳିକ ସତ୍ୟଟି ଆମ ଆଗରେ ବେଶ୍ ସ୍ପଷ୍ଟ ଓ ପ୍ରାଞ୍ଜଳ ହୋଇଯାଏ ।

ଅଧ୍ୟାପକ ଶ୍ରୀଧର ଦାସ ଥିଲେ ଏହିପରି ଜଣେ ସାଧକ, ଯାହାଙ୍କର ଜୀବନ ଦୁଃଖ–ଯନ୍ତ୍ରଣା ଭିତର ଦେଇ ହିଁ ଆଗେଇ ଯାଇଥିଲା ଉତ୍ତରଣ ପଥରେ । ସାଂପ୍ରତିକ କାଳରେ ମଣିଷର ସାମାଜିକ ଜୀବନ-ଦର୍ଶନ ବହୁ ଭାବରେ ବଦଳି ଯାଇଚି । ଶିକ୍ଷା, ଶିକ୍ଷକ ଓ ଶିକ୍ଷାୟତନରେ ଅବକ୍ଷୟର ଯେଉଁ ମହାନାଟକ ଆରମ୍ଭ ହୋଇଥିଲା ସ୍ୱାଧୀନତା-ଉତ୍ତର କାଳର ସପ୍ତମ ଦଶକରେ, ଏବେ ତାହା ଶୀର୍ଷ ବିନ୍ଦୁ ସ୍ପର୍ଶ କରିବାକୁ ଯାଉଛି । ଦେଶର ସବୁଠାରୁ ମୂଲ୍ୟବାନ ସଚେତନତା ହେଉଛି, ସେ ଦେଶର ଶିକ୍ଷା ଓ ସ୍ୱାସ୍ଥ୍ୟ । କିନ୍ତୁ ଆମ ଦେଶରେ ଏ ଦୁଇଟିଯାକ ବିଭାଗ ଉଦାସୀନତା ଓ ଅବହେଳାର ଶିକାର । ଏ ପରିସ୍ଥିତିରେ 'ଶିକ୍ଷକତା'କୁ 'ଅଧମ ଉଦ୍ଧାରଣ ପନ୍ଥା' ଭାବରେ

ଚିତ୍ରଣ କରିବା, ସ୍ୱାଭାବିକ ହୋଇପାରେ; କିନ୍ତୁ ଗୋଟିଏ ସମ୍ପ୍ରତି ସଚେତନ ଜାତି ପକ୍ଷରେ ତାହା କେବେହେଲେ ସମୀଚୀନ ହୋଇନପାରେ ।

—କିନ୍ତୁ ଶିକ୍ଷକତାହିଁ ଦିନେ ଥିଲା, ମଣିଷର ଏକ ମହତ କର୍ମ । ବିଦ୍ୟାଦାନ ଥିଲା ମହାନ୍ ଦାନ । ସମାଜରେ ଶିକ୍ଷକମାନଙ୍କୁ ଆଜିପରି 'ଦେଶ ଓ ଜାତିର ମେରୁଦଣ୍ଡ' କହି ସେମାନଙ୍କର ମେରୁହାଡ଼କୁ ଭାଙ୍ଗିବା ପାଇଁ କୁତ୍ସିତ ଷଡ଼ଯନ୍ତ୍ର ହେଉ ନଥିଲା । ଗୁରୁମାନଙ୍କୁ ସାକ୍ଷାତ୍ ପରଂବ୍ରହ୍ମ ଓ ଈଶ୍ୱର ରୂପରେ ଗଣ୍ୟ କରା ହେଉଥିଲା ଓ ଗୁରୁମାନେ ମଧ୍ୟ ବିଦ୍ୟାର ଆଲୋକରେ ସମାଜରୁ ଅଜ୍ଞାନ-ଅନ୍ଧକାରକୁ ଦୂରେଇ ରଖିବାକୁ ଯତ୍ନବାନ ହେଉଥିଲେ । ଅଧ୍ୟାପକ ଶ୍ରୀଧର ଦାସ ଯେପରି ଥିଲେ ଏଇ ମହାନ ପରଂପରାର ସାର୍ଥକ ଉତ୍ତର-ସୂରୀ । ୧୯୨୪ ମସିହା ଜୁଲାଇ ମାସରେ ତାଙ୍କର ଶିକ୍ଷକ ଜୀବନ ଆରମ୍ଭ ହୋଇ, ଶେଷ ହୋଇଥିଲା ୧୯୬୮ ମସିହା ଜୁନ୍ ମାସରେ । ଚାଳିଶ ବର୍ଷରୁ ଊର୍ଦ୍ଧ୍ୱ କାଳ ଧରି ସେ, ଯେଉଁ ଜୀବନକୁ ଆପଣାର କରି ନେଇଥିଲେ, ସେ ଜୀବନରେ ପ୍ରାଚୁର୍ଯ୍ୟ ହୁଏତ ନଥିଲା, କିନ୍ତୁ ଐଶ୍ୱର୍ଯ୍ୟ ଥିଲା ପୂର୍ଣ୍ଣମାତ୍ରାରେ । ସେଥିପାଇଁ, ଜୀବନରେ ସେ ସହସ୍ର ସହସ୍ର ଛାତ୍ରଙ୍କୁ ମଣିଷକରି ଗଢି ପାରିଥିଲେ । ନିଜେ ସେ ଜଣେ ଉଚ୍ଚକୋଟୀର ମଣିଷ ଥିବାରୁ, ତାଙ୍କ ମଣିଷ ପଣିଆର ଦୁର୍ଲ୍ଲଭ ସ୍ୱାକ୍ଷର ବହୁ ଛାତ୍ରଙ୍କ ଜୀବନକୁ କରି ପାରିଥିଲା ପ୍ରଭାବିତ ଓ ଜ୍ଞାନାଲୋକିତ । ବିନୟୀ, ଭଦ୍ର, ମାର୍ଜିତ ଓ ସରଳ ବିଶ୍ୱାସୀ ମଣିଷ ଶ୍ରୀଧର ବାବୁ ତେଣୁ ଯଥାର୍ଥରେ ହୋଇ ପାରିଥିଲେ ମଣିଷ ଆମ୍ଭର ଏକ ସଫଳ ବିନ୍ଧାଣୀ !

ଛାତ୍ର ଜୀବନରେ ଶ୍ରୀଧର ବାବୁ ଥିଲେ ଅତ୍ୟନ୍ତ ମେଧାବୀ । ନିମ୍ନ ପ୍ରାଥମିକ ଠାରୁ ଆରମ୍ଭ କରି ଆଇ:ଏ: ପାସ୍ କରିବା ପର୍ଯ୍ୟନ୍ତ ସେ ସବୁ ପରୀକ୍ଷାରେ କୃତିତ୍ୱର ସହ ଉତୀର୍ଣ୍ଣ ହୋଇ ବୃତ୍ତି ଲାଭ କରିଥିଲେ । ବସ୍ତୁତଃ ଏହି 'ବୃତ୍ତି' ହିଁ ଥିଲା ତାଙ୍କ ଅଧ୍ୟୟନରେ ଏକମାତ୍ର ସମ୍ବଳ । ତାଙ୍କର ପିତା ମଧ୍ୟ ଥିଲେ ପ୍ରାଇମେରୀ ସ୍କୁଲର ଶିକ୍ଷକ । କିନ୍ତୁ ଏବେ ଯେପରି ପ୍ରାଇମେରୀ ସ୍କୁଲ ଶିକ୍ଷକମାନେ 'ବୃତ୍ତି'ର ସୀମା ଲଙ୍ଘନ କରି 'ପ୍ରବୃତ୍ତି'ର ଶିକାର ହୋଇ ପଡ଼ିଛନ୍ତି, ସେତେବେଳ ତାହା ନଥିଲା । ତେଣୁ ଶ୍ରୀଧରବାବୁଙ୍କୁ ଆର୍ଥିକ ପୃଷ୍ଠପୋଷକତା ଯୋଗାଇ ମଣିଷ କରିବା ପାଇଁ ପିତାଙ୍କର ପ୍ରଚୁର ଆଗ୍ରହ

ଥିଲେ ମଧ୍ୟ ଆର୍ଥିକ ପରିସ୍ଥିତି ସେଥିରେ ବହୁ ପ୍ରତିକୂଳ ପ୍ରଭାବ ବିସ୍ତାର କରିଥିଲା । କିନ୍ତୁ ଯିଏ ସାଧନାର ପଥ ବାଛି ନେଇଥାଏ, କାଳେ କାଳେ ତାର ଭାଗ୍ୟରେ ଜୁଟିଥାଏ ପଙ୍କ–ତିଳକ । ଶ୍ରୀଧରବାବୁଙ୍କ ଜୀବନ ମଧ୍ୟ ଏଇ ପରିଣତିରେ ଗ୍ରଥିତ ହୋଇଥିଲା । ସେଥିପାଇଁ ଛାତ୍ରାବସ୍ଥାରେ କଠିନ ପରିଶ୍ରମ କରି ସେ ବୃତ୍ତିଲାଭ କରି ନଥିଲେ, ହୁଏତ ଉଚ୍ଚଶିକ୍ଷା ଲାଭ କରିବା ତାଙ୍କ ପକ୍ଷରେ ହୋଇଥାଆନ୍ତା ଆକାଶ–କୁସୁମ ।

ଖୁବ୍ ପିଲା କାଳରୁ 'ଶିକ୍ଷକ'ଟିଏ ହେବା ଥିଲା ତାଙ୍କ ଜୀବନର ମହାନ୍ ଲକ୍ଷ୍ୟ । ହୁଏତ ଶିକ୍ଷକ–ପିତାଙ୍କର ଆଦର୍ଶର ପ୍ରଭାବ ତାଙ୍କୁ ବିଶେଷ ଭାବରେ ପ୍ରଭାବିତ କରିଥିଲା । କିନ୍ତୁ ତାହାହିଁ ବୋଧହୁଏ ଏ ସମ୍ପର୍କରେ ସର୍ବଶେଷ କଳ୍ପନା ନୁହେଁ । ଶ୍ରୀଧରବାବୁ ଯେଉଁ ଯୋଗ୍ୟତାର ଅଧିକାରୀ ହୋଇଥିଲେ, ସେତେବେଳେ ସେପରି ଯୋଗ୍ୟତାର ଅଧିକାରୀ ହେବା ଲୋକଙ୍କ ସଂଖ୍ୟା ଥିଲା ଅଙ୍ଗୁଳିମେୟ । ସେ ତେଣୁ ଇଚ୍ଛା କରିଥିଲେ, ପରାଧୀନ ଭାରତବର୍ଷରେ ନିହାତି କମ୍‌ରେ ସବ୍-ଡେପୁଟିଟାଏ ହୋଇ ବେଶ୍ ଆରାମରେ ଜୀବନ କଟାଇ ପାରିଥାଆନ୍ତେ ଓ ଉତ୍ତର ପୁରୁଷ ମାନଙ୍କପାଇଁ ଅନେକ କିଛି ରଖି ଯାଇଥାନ୍ତେ । କିନ୍ତୁ ତାଙ୍କ ଜୀବନରେ ସେପରି ଲକ୍ଷ୍ୟ କେବେ ନ ଥିଲା । ତାଙ୍କ ନିଜ ଭାଷାରେ ତାଙ୍କ ଜୀବନ ଏକ 'ସୁଅ ମୁହଁରେ ପତର' ହେଲେ ମଧ୍ୟ, ସେ ସ୍ରୋତ ଓ ପତ୍ରର ଲକ୍ଷ୍ୟ କିନ୍ତୁ ଥିଲା ସୁନିର୍ଦ୍ଦିଷ୍ଟ । ସେଥିପାଇଁ ସେ ଜୀବନର ଶେଷ ପର୍ଯ୍ୟନ୍ତ ଅକୂଳରେ ନଭାସି କୂଳରେ ହିଁ ଲାଗିଥିଲେ । ବୈଦିକ ଚେତନାରେ ସେଇ କୂଳର ଅନ୍ୟ ନାମ ହେଉଛି ଯଥାର୍ଥତଃ 'ଗୁରୁକୁଳ' । ଗୁରୁକୁଳର ଜୀବନ ଦର୍ଶନ ତାଙ୍କ ଜୀବନକୁ ଅନୁପ୍ରାଣୀତ କରି ପାରିଥିଲା ବୋଲି, ସେ କାକଟପୁର ମଧ୍ୟ ଭର୍ଣ୍ଣାକୁଲାର ସ୍କୁଲରେ ଶିକ୍ଷକ ଜୀବନ ଆରମ୍ଭ କରି ଖ୍ରୀଷ୍ଟ କଲେଜର ଓଡ଼ିଆ ବିଭାଗର ମୁଖ୍ୟ ଅଧ୍ୟାପକ ଭାବରେ ଅବସର ଗ୍ରହଣ କରିଥିଲେ । ଇତିହାସରେ, ଉତ୍ତରଣର ଏପରି ଉଦାହରଣ ଭୂରି ଭୂରି ଦେଖିବାକୁ ମିଳେ ନାହିଁ । ସେଥିପାଇଁ ଏପରି ବ୍ୟକ୍ତିମାନେ ଇତିହାସ ସୃଷ୍ଟି କରି ପାରନ୍ତି । ପରବର୍ତ୍ତୀ କାଳରେ ସେମାନଙ୍କର ସେ ସୃଷ୍ଟି ଇତିହାସର ଅକ୍ଷରରେ ଜୀବନ୍ୟାସ ପାଇଁ, ଉତ୍ତରକାଳ ପାଇଁ ହୋଇଯାଏ ଯଥାର୍ଥ ପ୍ରେରଣାର ଉତ୍ସ ।

ଶ୍ରୀଧର ବାବୁ ମଧ୍ୟ ଥିଲେ ଜଣେ ସୁଲେଖକ । ବ୍ୟାକରଣ, ବିଭିନ୍ନ ପାଠ୍ୟ ପୁସ୍ତକ, ପାଠ୍ୟ ପୁସ୍ତକ ବିଷୟକ ଗ୍ରନ୍ଥ, ଅନୁବାଦ, ଜୀବନୀ ଓ ବିଭିନ୍ନ

କାବ୍ୟର ସଂପାଦନା ମଧ୍ୟରେ ତାଙ୍କର ସାରସ୍ୱତ ପ୍ରତିଭା ବିକଶିତ ହୋଇଛି । ସେ ୧୨୦ରୁ ଊର୍ଦ୍ଧ୍ୱ ପୁସ୍ତକ ରଚନା କରି ଓଡ଼ିଶାର ସବୁ ଶ୍ରେଣୀ ଓ ସବୁ ବୟସର ପାଠକଙ୍କ ହୃଦୟକୁ ଜୟ କରିଛନ୍ତି । ତାଙ୍କ ଜୀବନ ପରି, ତାଙ୍କ ରଚିତ ପୁସ୍ତକ ସବୁ ଯେପରି ସରଳ, ସେହିପରି ହୃଦୟ ଗ୍ରାହୀ । ଓଡ଼ିଶାର ପ୍ରାଚୀନ କାବ୍ୟ, ବିଶେଷ କରି ରୁକ୍ମିଣୀ–ବିଭା, ମଥୁରା ମଙ୍ଗଳ, ରସକଲ୍ଲୋଳ ଓ ବିଦଗ୍ଧ ଚିନ୍ତାମଣିର ସେ ଯେପରି ସୁ-ସଂପାଦନା କରି ଅଛନ୍ତି; ତାହା ଆଜି ପର୍ଯ୍ୟନ୍ତ ଆଦର୍ଶସ୍ଥାନୀୟ ହୋଇ ରହିଛି । ବୈଷ୍ଣବ ଦର୍ଶନର ନିଗୂଢ଼ ତତ୍ତ୍ୱ ଗଳିକୁ ସେ ଯେପରି ସରଳ ଭାବରେ ବୁଝାଇ ଅଛନ୍ତି, ତାହା ତାଙ୍କ ପ୍ରାଣର ସରଳତାର ସୂଚନା ଦେଇଥାଏ । ଇଂରାଜୀ, ହିନ୍ଦୀ, ବଙ୍ଗଳା ଓ ସଂସ୍କୃତ ସାହିତ୍ୟରେ ତାଙ୍କର ଥିଲା ଅଗାଧ ପ୍ରବେଶ । ସେଥିପାଇଁ ସେ ବହୁ ମୂଲ୍ୟବାନ ସଂସ୍କୃତ ତଥା ଇଂରାଜୀ ଗ୍ରନ୍ଥକୁ ସରଳ ଓଡ଼ିଆରେ ଅନୁବାଦ କରି ଯଶସ୍ୱୀ ହୋଇ ଅଛନ୍ତି । ପ୍ରାବନ୍ଧିକ, ଜୀବନୀକାର, ଅନୁବାଦକ, ସମ୍ପାଦକ ଓ ସଂକଳକ ଭାବରେ ତାଙ୍କ ପ୍ରତିଭାକୁ ସ୍ୱୀକୃତି ଦେଇ ଓଡ଼ିଆ ସାହିତ୍ୟ ଏକାଡେ଼ମୀ ତାଙ୍କୁ ଯେ ସମ୍ବର୍ଦ୍ଧିତ କରିଅଛନ୍ତି, ତାହା ଯଥାର୍ଥ ।

ଅଧ୍ୟାପକ ଶ୍ରୀଧର ଦାସଙ୍କର ଜୀବନ ଥିଲା ସାଧାରଣ; କିନ୍ତୁ ତାଙ୍କର ବ୍ୟକ୍ତିତ୍ୱ ଥିଲା ଅସାଧାରଣ । ତାଙ୍କର ଛାତ୍ରମାନେ, ତାଙ୍କ ବ୍ୟକ୍ତିତ୍ୱର ପରଶରେ ଜୀବନରେ ସୁପ୍ରତିଷ୍ଠିତ ହୋଇ ପାରିଛନ୍ତି । କୁଡ଼ିଆ ଘରର ଧୂଳି ଶେଯରୁ ଇଟା ନିର୍ମିତ ପକ୍କା ଘର, ଶୂନ୍ୟ ଦେହରେ ଶୀତର ପ୍ରକୋପ ସହିବା ଠାରୁ, ସେଇ ଦେହରେ ପୁଣି ଦାମିକା ଶାଲ, ଶହ ଶହ ମାଇଲ ପଦ ଯାତ୍ରାରୁ ଏରୋପ୍ଲେନ ଯାତ୍ରା, ଜୀବନର ବିଚିତ୍ର ଉଠାଣି ଗଡ଼ାଣି ମଧ୍ୟ ଦେଇ, ତାଙ୍କ ଜୀବନ ନିୟନ୍ତ୍ରିତ ହୋଇଛି । ପ୍ରଚଳିତ ଅର୍ଥରେ ସେ ସୁଖୀ ମଧ୍ୟ ହୋଇଛନ୍ତି । ତଥାପି ଏ ସବୁ ଭିତରେ, ଜୀବନର କୌଣସି ପରି-ସ୍ଥିତିରେ ସେ ମୂଲ୍ୟବୋଧକୁ ଜଳାଞ୍ଜଳି ଦେଇ ନାହାନ୍ତି । ଶ୍ରୀଧର ବାବୁ ଯେଉଁ ପୀଢ଼ୀର ମଣିଷ, ସେ ପୀଢ଼ିରେ, ଜୀବନର ମୂଲ୍ୟବୋଧ ଓ ତାର ସଂରକ୍ଷଣ ବେଳେ ବେଳେ ଜୀବନ ଅପେକ୍ଷା ଅଧିକ ମୂଲ୍ୟବାନ ହୋଇଛି । ଏଇ ମୂଲ୍ୟବୋଧର ପ୍ରତିଷ୍ଠା ଓ ସଂରକ୍ଷଣ ତ ଯୁଗେ ଯୁଗେ ଶିକ୍ଷାର ଆଦର୍ଶ ହୋଇ ଆସିଅଛି । ପୁରୁଷକାର ଓ ଈଶ୍ୱର ନିର୍ଭରତା, ଏହି ଦୁଇଟି ଉପା-ଦାନରେ ଶ୍ରୀଧର ବାବୁଙ୍କ ଜୀବନ ନିୟନ୍ତ୍ରିତ ହୋଇଥିଲା । ଏହି ଦୁଇଟି

ଉପାଦାନ ଅଥବା ପ୍ରବୃତ୍ତିର ଯେଉଁଠି ସୁଷମ ସମନ୍ୱୟ ଘଟିଥାଏ, ଜୀବନ ସେଠାରେ ଚମତ୍କାର ଭବରେ ବଂଚିପାରେ । ସେଠାରେ ଜୀବନର ଛୋଟ ଛୋଟ ଦୁଃଖ, ଯନ୍ତ୍ରଣା, ଅତୃପ୍ତି, ହତାଶା ଅଥବା ହାହାକାର କୌଣସି ଭବରେ ବ୍ୟକ୍ତିକୁ ବିଚଳିତ କରିପାରେ ନାହିଁ । ଶ୍ରୀଧର ବାବୁଙ୍କ ଜୀବନରେ ସେଇ ଅବିଚଳିତ ଆଦର୍ଶ, ଜୀବନର ଶେଷ ପର୍ଯ୍ୟନ୍ତ ବଂଚି ରହିଥିଲା । ସେଥିପାଇଁ ସେ ଜୀବନରେ କୌଣସି ପରିସ୍ଥିତିରେ ସୁଦ୍ଧା ଭର୍ଙ୍ଗି ପଡ଼ି ନ ଥିଲେ କିମ୍ବା ମୂଲ୍ୟବୋଧ ସହିତ ସାଲିସ୍ ମଧ୍ୟ କରି ନ ଥିଲେ । ଏ ପୃଥିବୀରେ ଜନ୍ମ ହେଲେ ମୃତ୍ୟୁ ଅବଶ୍ୟାମ୍ଭାବୀ । ଏପରିକି ମର୍ତ୍ତ୍ୟ ମଣ୍ଡଳରେ ଦେବତା ସୁଦ୍ଧା ଜନ୍ମ ଗ୍ରହଣ କଲେ, ତାଙ୍କୁ ମୃତ୍ୟୁବରଣ କରିବାକୁ ପଡ଼ିଥାଏ । କିନ୍ତୁ ଜଣେ ଜଣେ ବ୍ୟକ୍ତି ମରି ସୁଦ୍ଧା, ବଞ୍ଚି ରହନ୍ତି । ସେ ଯେଉଁ କାର୍ଯ୍ୟ କରିଥାଆନ୍ତି, ସେହି ମହାନ୍ କର୍ମର ପ୍ରତିଟି ପୃଷ୍ଠାରେ ତାଙ୍କର ନାମ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇଯାଏ । ପରବର୍ତ୍ତୀ କାଳ ପାଏ ସେଥିରୁ ଶାଶ୍ୱତ ପ୍ରେରଣା । ଅଧ୍ୟାପକ ଶ୍ରୀଧର ଦାସ ଥିଲେ ସେହିପରି ଏକ ପ୍ରେରଣାର ଉତ୍ସ । ମଣିଷ, ତାର ସାଧନା ଓ ଅଧ୍ୟବସାୟ ବଳରେ ତାର ବ୍ୟକ୍ତିତ୍ୱକୁ କେଉଁ ପର୍ଯ୍ୟାୟରେ ନେଇ ସ୍ଥାପନ କରିପାରେ, ସେ ଦିଗ୍‌ଦର୍ଶନ ଶ୍ରୀଧର ବାବୁଙ୍କ ଜୀବନରୁ ମିଳିଥାଏ ପ୍ରଚୁର । ତାଙ୍କର ମର ଶରୀରକୁ ବସୁନ୍ଧରାର ମାଟି ଗ୍ରାସ କରିଅଛି ସତ, କିନ୍ତୁ ତାଙ୍କର ଅଗଣିତ ଛାତ୍ର ତଥା ଅନୁରକ୍ତଙ୍କ ମନରେ ସେ ଚିର ଆୟୁଷ୍ମାନ ।

ଶ୍ରୀଧର ବାବୁ ଥିଲେ ଯେପରି ଏକ ବିଦଗ୍ଧ ବସୁନ୍ଧରା । ସେ ବସୁନ୍ଧରାରୁ ରସ ସଂଗ୍ରହ କରି ବହୁ ବୃକ୍ଷ ଅସାଧାରଣ ମହୀରୁହରେ ପରିଣତ ହୋଇଛନ୍ତି । ତାହାର ପୁଷ୍ପିତ ଛାୟାରେ ଦଣ୍ଡେ ବିଶ୍ରାମ କଲେ, ମନରେ ଯେଉଁ ପୂର୍ଣ୍ଣତା ଓ ପ୍ରଶାନ୍ତି ଆସେ, ଜୀବନର ସବୁ ମିଶାଣ-ଫେଡ଼ାଣ ମଧ୍ୟରେ ତାହାହିଁ ହେଉଛି ପରମ ପ୍ରାପ୍ତି ।



# ଗୁରୁଦେବ ଶ୍ରୀଧର ଦାସ

ଅଧ୍ୟାପକ ଚନ୍ଦ୍ରଶେଖର ମହାପାତ୍ର

ସ୍ମୃତିର ଆଲୋଡ଼ନ ବେଳେ ପ୍ରବଣତାର ପରାଗ ଯେତେ ଅନ୍ଧ କଲେ ମଧ୍ୟ ଚିତ୍ରଟି ସୁସ୍ପଷ୍ଟ ଦିଶୁଛି, ଯେପରି ମୁଁ ଦେଖିଥିଲି ଆଜିକୁ ଅଠତିରିଶ ବର୍ଷ ତଳେ । ଗମ୍ଭୀର ଓ ମିଷ୍ଟଭାଷୀ, ଚଞ୍ଚଳ ଓ ସ୍ଥିତପ୍ରଜ୍ଞ ଏବଂ ଅପ୍ରଶସ୍ତ ଧୋତି ଓ ସାଦାପଞ୍ଜାବିର ଭେକରେ ଚିରନିରାଡ଼ମ୍ବର ଯେଉଁ ବ୍ୟକ୍ତିତ୍ୱ ତରୁଣ ଛାତ୍ରର ଅଯଥା ଚପଳତ୍ୱ ସଂଯତ କରେ, ଅଥଚ ତାରୁଣ୍ୟର ଅବମାନନା କରେନାହିଁ, ମୁଁ ଦେଖିଥିଲି ସେହି ବିଗ୍ରହ ଗୁରୁଦେବ ଶ୍ରୀଧର ଦାସଙ୍କଠାରେ । ତାଙ୍କ ଭିତରେ ବ୍ୟକ୍ତିତ୍ୱ ଥିଲା ଜ୍ଞାନର ଏକ ସୁରମ୍ୟ ସରୋବର । ଏହାର ତଟ-ସୋପାନରେ ବସି ମୁଁ କେବଳ ବିମୁଗ୍ଧ ହୋଇଛି, କିନ୍ତୁ ସେଥିରୁ ପଦ୍ମଚୟନ କରିପାରି ନାହିଁ ।

ଖ୍ରୀଷ୍ଟକଲେଜରେ ତାଙ୍କ ଛାତ୍ର ହେବା ପୂର୍ବରୁ ମୁଁ ତାଙ୍କୁ ଦେଖିଥିଲି । ସେତେବେଳେ ଏହି କଲେଜ 'ଉତ୍କଳ ଖ୍ରୀଷ୍ଟିଆନ୍ କଲେଜ' ନାମରେ ଆମ ସ୍କୁଲ ଗୃହରେ ( ମିଶନ୍ ସ୍କୁଲ—ପରିବର୍ତ୍ତିତ ନାମ—ଖ୍ରୀଷ୍ଟକଲେଜିଏଟ୍ ସ୍କୁଲ ) ପରିଚାଳିତ ହେଉଥିଲା । ତାଙ୍କ ଯଥାର୍ଥ ଯୋଗ୍ୟତା ବୁଝିବାକୁ ସେ ବୟସରେ ମୋର ସୁଯୋଗ ନଥିଲା । ତେବେ ଏତିକି ଜାଣିଥିଲି, ସେ ମୋର ପିତୃତୁଲ୍ୟ କେବଳ ବୟସ ଓ ସଂଭ୍ରମ ଦୃଷ୍ଟିରୁ ନୁହେଁ, ଅଧିକନ୍ତୁ ତାଙ୍କ ଜ୍ୟେଷ୍ଠପୁତ୍ର ଜଗନ୍ନାଥ ( ଜଗନ୍ନାଥ ପ୍ରସାଦ ଦାସ, ଆଇ. ଏ. ଏସ୍. ) ଉକ୍ତ ସ୍କୁଲରେ ନବମ ଶ୍ରେଣୀରୁ ମୋର ଜଣେ ଅନ୍ତରଙ୍ଗ ସହପାଠୀ ଥିଲେ ।

ସହକାର ବୃକ୍ଷ ବେଷ୍ଟିତ ଖ୍ରୀଷ୍ଟକଲେଜର ନୂତନ ଗୃହରେ ୧୯୫୧ ଜୁଲାଇ ମାସରେ ମୁଁ ତାଙ୍କୁ ଦେଖିଲି ମୋର ଗୁରୁଦେବ ରୂପେ । ସେତେ-ବେଳେ ଅଧ୍ୟକ୍ଷ ରେଭରେଣ୍ଡ୍ ବ୍ରହ୍ମାନନ୍ଦ ମହାନ୍ତିଙ୍କ ସମେତ କଲେଜରେ

ଥିଲେ ମାତ୍ର ବାରଜଣ ଶିକ୍ଷକ । ଓଡ଼ିଆ ବିଭାଗରେ ଶ୍ରୀଧରସାର୍‌ଙ୍କ ପଛକୁ ଅଧୁନା ଅବସର ପ୍ରାପ୍ତ ଦୁଇଜଣ ଲବ୍‌ଧ ପ୍ରତିଷ୍ଠ ଅଧ୍ୟାପକ ଡକ୍ଟର ଶ୍ରୀନିବାସ ମିଶ୍ର ଓ ଶ୍ରୀ ପଠାଣି ପଟ୍ଟନାୟକ ସେହିବର୍ଷ ସଦ୍ୟ ଉପାଧି ଧରି ନିଯୁକ୍ତି ପାଇଥିଲେ । କଲେଜରୁ ବିଦାୟ ନେବା ପର୍ଯ୍ୟନ୍ତ ତାଙ୍କ ଓଡ଼ିଆ ଅନର୍ସ ଶ୍ରେଣୀର ଗୌରବ ରଖିବା ପାଇଁ ଶ୍ରୀଧରସାର୍ ସଚେତ ଥିଲେ ଏବଂ ତାଙ୍କ ଅନର୍ସ ପରୀକ୍ଷାର୍ଥୀମାନେ ବିଶ୍ୱବିଦ୍ୟାଳୟରେ ଶ୍ରେଷ୍ଠକୃତିତ୍ୱ ପ୍ରଦର୍ଶନି କରି ଚାଲିଥିଲେ । ତାଙ୍କ ଉତ୍ତର ସାଧକ ପଠାଣି ସାର୍‌ଙ୍କ ଅମଳରେ ମଧ୍ୟ ଏହି ପରଂପରାର ମହତ୍ତ୍ୱ ବଜାୟ ରହିଥିଲା ।

କରତାଳି ଗ୍ରାହୀ ବାଗ୍ମିତା ସିନା ତାଙ୍କର ନଥିଲା, କିନ୍ତୁ ସରଳ, ସଂକ୍ଷିପ୍ତ, ସୁସ୍ପଷ୍ଟ ତଥା ସଦୃଷ୍ଟାନ୍ତ ଆଲୋଚନା, ଯାହା ଅଧ୍ୟାପନାର ବିରଳ ବୈଶିଷ୍ଟ୍ୟ, ତା' ସେ ପରଷି ଦେଉଥିଲେ । ପୁଣି, ଆବଶ୍ୟକ ସ୍ଥଳେ ନିର୍ଭୀକ ମତର ଅଭିବ୍ୟକ୍ତି ମଧ୍ୟ ଥିଲା । ମନେ ପଡୁଛି, ୨ୟବାର୍ଷିକ ଶ୍ରେଣୀରେ ଗୋପୀନାଥଙ୍କ 'ହରିଜନ' ଉପନ୍ୟାସର ଆଲୋଚନା ପ୍ରସଙ୍ଗରେ ତାଙ୍କର ଦୁଇଟି ବାକ୍ୟ– "ଧନୀବୁଢ଼ା କିଏ ? ହରିଜନ ବସ୍ତିରେ ତାର ଅସ୍ତିତ୍ୱର ଯଥାର୍ଥତା ବୁଝି ହେଉ ନାହିଁ ।" ବାସ୍ତବିକ, ମୋ ପରିଣତ ବୟସରେ ହରିଜନ ଉପନ୍ୟାସ ପୁନରାୟ ପାଠକରି ମଧ୍ୟ ସେହି ଚରିତ୍ରଟିର ସ୍ୱାଭାବିକତା ସମ୍ବନ୍ଧରେ ପ୍ରଶ୍ନର ଉତ୍ତର ମୁଁ ପାଇନାହିଁ ।

ତାଙ୍କ ସହକର୍ମୀ ହେବା ପାଇଁ ମୁଁ ସୁଯୋଗ ପାଇଲି ୧୯୬୦ ଅଗଷ୍ଟ ମାସରେ । ଆଜି ସେହି ସ୍ୱର୍ଣ୍ଣ ସକାଳର ସ୍ମୃତି ଉଜ୍ଜ୍ୱଳି ଉଠୁଛି । ଖ୍ରୀଷ୍ଟ କଲେଜର ଓଡ଼ିଆ ବିଭାଗରେ ନିଯୁକ୍ତି ପାଇଁ ମୁଁ ଯାଇଥାଏ ଜଣେ ପ୍ରାର୍ଥୀ ଭାବେ । ସେତେବେଳେ ଏହି କଲେଜରେ ଅଧ୍ୟାପକ ନିଯୁକ୍ତି ପାଇଁ କେବଳ ସାକ୍ଷାତ୍‌କାରରେ ଯୋଗ୍ୟତା ନିର୍ଣ୍ଣୀତ ହେଉ ନ ଥିଲା । ପ୍ରାର୍ଥୀଙ୍କୁ ଛାତ୍ର ପୂର୍ଣ୍ଣ ଏକ ଶ୍ରେଣୀ-କକ୍ଷରେ ଅଧ୍ୟାପନାର ପରୀକ୍ଷା ଦେବାକୁ ପଡୁଥିଲା । ଛାତ୍ର ମାନଙ୍କ ପଶ୍ଚାତରେ ବସୁଥିଲେ ବିଭାଗୀୟ ମୁଖ୍ୟ ଓ ଅଧ୍ୟକ୍ଷ ମହାଶୟ । କେଉଁ ପ୍ରାର୍ଥୀଙ୍କ ଅଧ୍ୟାପନାର ବିଷୟ କଣ ହେବ, ତାହା ନିର୍ଦ୍ଦିଷ୍ଟ ସମୟରେ କିଛି ପୂର୍ବରୁ ଜଣାଇ ଦିଆ ଯାଉଥିଲା । ମନ ଉତ୍କଣ୍ଠା ଜଡ଼ିତ–ମୋତେ କେଉଁ ବିଷୟ ଦିଆଯିବ । ସାମଗ୍ରିକ ଭାବେ ଯଥା ସମ୍ଭବ ପ୍ରସ୍ତୁତ ହୋଇଥିଲେ

ମଧ୍ୟ କାହିଁକି କେଜାଣି କବି ଗଙ୍ଗାଧରଙ୍କ ସମ୍ବନ୍ଧରେ ମୁଁ ସ୍ୱତନ୍ତ୍ର ପ୍ରସ୍ତୁତି କରିଥିଲି । ତେବେ କଣ ଗୁରୁ ଓ ଶିଷ୍ୟଙ୍କ ମନ ଏକାକାର ହୋଇଥିଲା ? କିଛି ଆଶ୍ଚର୍ଯ୍ୟ ନୁହେଁ । ଯଥା ସମୟରେ ସାର୍ ଅଧ୍ୟାପକ-ପ୍ରକୋଷ୍ଠକୁ ଆସି ଜଣାଇ ଦେଲେ ମୋର ବିଷୟଟି—କବି ଗଙ୍ଗାଧର ମେହେର । ଅଧ୍ୟାପନା ପରୀକ୍ଷାରେ ମୁଁ ପ୍ରଥମ ବିବେଚିତ ହୋଇ ନିଯୁକ୍ତି ପାଇଲି ।

ଶ୍ରୀଧର ସାର୍‌ଙ୍କୁ ସ୍ମରଣ କରିବା ବେଳେ କଲେଜର ତାଙ୍କ ସମ-ସାମୟିକ ପ୍ରବୀଣ ଅଧ୍ୟାପକମାନେ ସ୍ମୃତି-ସରଣୀରେ ଉପନୀତ ହୋଇଯାନ୍ତି । ସେମାନେ ଥିଲେ ଖ୍ରୀଷ୍ଟ କଲେଜର ଗର୍ବ-ଗୌରବର ଆଧାର । ଅଧ୍ୟାପକ-ପ୍ରକୋଷ୍ଠରେ ସେମାନଙ୍କ ଆଳାପ, ଆଲୋଚନା ଓ ଯୁକ୍ତିର ଖଣ୍ଡନ-ମଣ୍ଡନ ଜନିତ ରସିକତା କେବଳ ଯେ ଉପଭୋଗ୍ୟ ହେଉଥିଲା ତା ନୁହେଁ, ଆମ କନିଷ୍ଠ ଶିକ୍ଷକମାନଙ୍କ ପକ୍ଷେ ଶିକ୍ଷଣୀୟ ମଧ୍ୟ ଥିଲା । ମୁଖାର୍ଜୀ ସାର୍, ଦର୍ଜୀ ସାର୍, ସୁବ୍ରମନିୟମ ସାର୍, ବାନାର୍ଜୀ ସାର୍ ଓ ରାୟ ସାର୍—ଏମାନଙ୍କ ଗହଣରେ ଶ୍ରୀଧର ସାର୍ ବିଦଗ୍‌ଧ ବୟୋଜ୍ୟେଷ୍ଠ ରୂପେ ସମ୍ମାନିତ ହେଉଥିଲେ ଏବଂ ତାଙ୍କ ସମ୍ମାନ ଯୋଗୁଁ ଆମେ ଓଡ଼ିଆ ବିଭାଗର ଶିକ୍ଷକ-ମାନେ ଗର୍ବ ବୋଧ କରୁଥିଲୁ । ସ୍କୁଲ ଓ କଲେଜ ଉଭୟ ବିଭାଗର ଶିକ୍ଷକ-ଜୀବନର ଅଭିଜ୍ଞତା ତାଙ୍କର ଥିଲା । ଖ୍ରୀଷ୍ଟ କଲେଜକୁ ଆସିବା ପୂର୍ବରୁ ଜଣେ ନିପୁଣ ପ୍ରଧାନ ଶିକ୍ଷକ ଭାବେ ସେ ପ୍ରତିଷ୍ଠା ପାଇଥିଲେ । ଓଡ଼ିଶାର ଶିକ୍ଷା-କ୍ଷେତ୍ରର ଅର୍ଦ୍ଧ ଶତାବ୍ଦୀର ତଥ୍ୟ ତାଙ୍କୁ ସୁବିଦିତ ଥିଲା ।

ଓଡ଼ିଆ, ଇଂରାଜୀ ଓ ସଂସ୍କୃତ ଭାଷାରେ ସେ ତ ସୁପଣ୍ଡିତ ଥିଲେ, ପୁଣି, ବଙ୍ଗଳା ଓ ହିନ୍ଦୀ ଭାଷାରେ ମଧ୍ୟ ତାଂକର ବ୍ୟୁତ୍ପତ୍ତି ଥିଲା । ଅନେକ ଇଂରାଜୀ ଅଧ୍ୟାପକଙ୍କ ଅପେକ୍ଷା ସେ ଅଧିକ ମୌଳିକ ଇଂରାଜୀ ଗ୍ରନ୍ଥ ପଢ଼ିଥିଲେ । ଇଂରାଜୀ ଲିଖନ ଭଙ୍ଗୀରେ ତାଂକର ଉତ୍କର୍ଷ ଥିଲା ଏବଂ ଆବଶ୍ୟକ ବେଳେ ଇଂରାଜୀରେ ଦୀର୍ଘ ଭାଷଣ ଦେବାର ତାଙ୍କ ଦକ୍ଷତା ମୁଁ ଦେଖିଛି ।

ବୈୟାକରଣିକ ଭାବେ ତାଙ୍କର ସିଦ୍ଧି ଓ ପ୍ରସିଦ୍ଧି ପାଇଁ ସେ କେବେ ଅହଂକାର ପ୍ରକାଶ କରୁ ନଥିଲେ; କିନ୍ତୁ ତଥାକଥିତ ଆଧୁନିକ ପ୍ରକାଶ-ଭଙ୍ଗୀରେ ଉପେକ୍ଷିତ ହେଉଥିବା ବ୍ୟାକରଣଗତ ତ୍ରୁଟି ତାଙ୍କ ପକ୍ଷେ ଅସହ୍ୟ ଥିଲା । ସେହିପରି, ବ୍ୟାକରଣ ପ୍ରତି ସାହିତ୍ୟ ଶିକ୍ଷକମାନଙ୍କ

ବୀତସ୍ପୃହ୍ୟତା ସେ ପସନ୍ଦ କରୁନଥିଲେ । ଅବସର ଗ୍ରହଣ କରିବାର ଅଳ୍ପଦିନ ପରେ ଥରେ ଅଧ୍ୟାପକ-ପ୍ରକୋଷ୍ଠରେ ଆଳାପ କରୁ କରୁ ହଠାତ୍ ସହାସ୍ୟ ପ୍ରଶ୍ନ କଲେ–"ହଇଓ, ପଠାଣି, ତୁମେ ତ ବିଭାଗୀୟ ମୁଖ୍ୟ ହେଲ; ମତେ ଆଗ କହିଲ, 'ଅଲୁକ୍' ସମାସ କଣ ?" ପଠାଣି ସାର୍‌ଙ୍କ ବ୍ୟାକରଣ ଜ୍ଞାନର ପରୀକ୍ଷା ନେବା ତାଙ୍କର ଉଦ୍ଦେଶ୍ୟ ନଥିଲା, କିନ୍ତୁ ଭାଷା ଓ ସାହିତ୍ୟ ବିଭାଗର ଶିକ୍ଷକଙ୍କ ବ୍ୟାକରଣ ବିଷୟରେ ରୁଚି ଓ ଆଗ୍ରହ ରହିବା ଯେ ବାଞ୍ଛନୀୟ, ସେଦିନ ସେ ଏହି ଚେତାବନୀ ଦେବାକୁ ଚାହିଁଥିଲେ ।

ଶୁଣିଛି, ନିଜ ଅଧ୍ୟବସାୟ ଯୋଗେ ନିଜକୁ ସେ ପ୍ରତିଷ୍ଠିତ କରିଥିଲେ । ସେ ଜଣେ ମେଧାବୀ ଛାତ୍ର ଥିଲେ । ଓଡ଼ିଶାର ତତ୍‌କାଳୀନ ଯଶନାମଧନ୍ୟ ପ୍ରଧାନ ଶିକ୍ଷକ ଚନ୍ଦ୍ରମୋହନ ମହାରଣାଙ୍କର ସେ ଛାତ୍ର । 'ଚନ୍ଦ୍ରମୋହନ ପରିକ୍ରମା'ରେ ସନ୍ନିବେଶିତ ତାଙ୍କର 'ଗୁରୁଦେବ ଚନ୍ଦ୍ରମୋହନ' ଶୀର୍ଷକ ଲେଖାରୁ ପ୍ରମାଣିତ ହୁଏ ଯେ ସ୍କୁଲରେ ଅଧ୍ୟୟନ ସମୟରୁହିଁ ସେ ସାହିତ୍ୟ ବିଷୟରେ ତାଂକ ରୁଚି ଓ ପଟୁତାର ପରିଚୟ ଦେଇଥିଲେ । ଶ୍ରେଣୀର ସବୁ ଛାତ୍ରଙ୍କଠାରୁ ତାଂକ ବ୍ୟାକରଣ ଜ୍ଞାନ ଅଧିକ ଥିଲା । ନବମ ଶ୍ରେଣୀର ଛାତ୍ର ଥିବାବେଳେ ଇଂରାଜୀ ପ୍ରବନ୍ଧ ପ୍ରତିଯୋଗିତାରେ ସେ ଏକାଦଶ ଶ୍ରେଣୀର ଛାତ୍ରଙ୍କୁ ମଧ୍ୟ ବଳି ଯାଇଥିଲେ ।

କେବଳ ଶିକ୍ଷକ ଭାବରେ ନୁହେଁ, ଅଫିସ କାର୍ଯ୍ୟ ପରିଚାଳନାରେ ମଧ୍ୟ ତାଙ୍କର ପ୍ରଚୁର ଦକ୍ଷତା ଓ ଅଭିଜ୍ଞତା ଥିଲା । ସେତେବେଳେ କଲେଜରେ ବର୍ସାର୍ ପଦବୀ ନଥିଲା । ବିନା ପାରିଶ୍ରମିକରେ ଓ ଅକୁଣ୍ଠ ଚିତ୍ତରେ ସେ କଲେଜର ଅଫିସ କାର୍ଯ୍ୟରେ ସାହାଯ୍ୟ କରୁଥିଲେ । ସେଥିପାଇଁ ସେ ଅଧ୍ୟକ୍ଷ ରେଭରେଣ୍ଡ୍ ମହାନ୍ତିଙ୍କ ଅତି ବିଶ୍ୱସ୍ତ ତଥା ସମ୍ମାନିତ ସହକର୍ମୀ ଥିଲେ ।

ନିଷ୍କ୍ରିୟତା ତାଙ୍କୁ କେବେ ସ୍ପର୍ଶ କରି ନଥିଲା । ଆଜୀବନ ସେ ତାଙ୍କ ସାରସ୍ୱତ ସାଧନା ଅବ୍ୟାହତ ରଖିଥିଲେ । ଅବସର ଗ୍ରହଣ ପରେ ମଧ୍ୟ ସେ ଅନେକ ବିଶ୍ୱ ବିଖ୍ୟାତ ଉପନ୍ୟାସର ସଂକ୍ଷିପ୍ତ ଭାବାନୁବାଦ କରିଛନ୍ତି । ଆମ ଭାଷାରେ କିଶୋର ବୟସର ପଠନ ଯୋଗ୍ୟ ପୁସ୍ତକର ଅଭାବ ରହିଛି । ତାଙ୍କର ଏହି ସାରସ୍ୱତ କୃତି କିଛି ଅଂଶରେ ଉକ୍ତ ଅଭାବ ପୂରଣ କରିଛି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଏ ସବୁ ତ ତାଙ୍କ ବୃତ୍ତିଗତ ନିଷ୍ଠା, ନୈପୁଣ୍ୟ, ସାହିତ୍ୟାନୁରାଗ ଓ ଜ୍ଞାନ-ଗୌରବର କଥା, କିନ୍ତୁ ତାଙ୍କ ବ୍ୟକ୍ତିତ୍ୱର ମହତ୍ତମ ବିଭବର ପରିଚୟ ମିଳିଛି ତାଙ୍କ ବିପ୍ଳବୀ ଚେତନାରୁ ଏବଂ ସେଥିପାଇଁ ସେ ସ୍ୱତନ୍ତ୍ର ଗୌରବର ଅଧିକାରୀ । ଆଜି ଯେଉଁ 'ନିଖିଳ ଓଡ଼ିଶା ବେସରକାରୀ କଲେଜ ଶିକ୍ଷକ ସଂଘ'ର ପତାକା ତଳେ ସମବେତ ହୋଇ ବିପ୍ଳବୀ ସ୍ଲୋଗାନ ମାଧ୍ୟମରେ ଶିକ୍ଷକ ମାନେ ଜୀବନ-ଜୀବିକାର ଦାବି ହାସଲ କରିଛନ୍ତି, ଗୁରୁଦେବ ଶ୍ରୀଧର ଦାସ ଥିଲେ ସେହି ସଂଘର ଜଣେ ପ୍ରାଣ ପ୍ରତିଷ୍ଠାତା । ତିରିଶ ବର୍ଷ ତଳେ ସେ ଓ ଷ୍ଟୁଆର୍ଟ ବିଜ୍ଞାନ କଲେଜର ପ୍ରବୀଣ ଅଧ୍ୟାପକ ଶିଶିର ମୁଖାର୍ଜୀ ଚେତନାର ପ୍ରଥମ ଶଙ୍ଖ ଧ୍ୱନି ତୋଳି ସଂଗଠନର ଯେଉଁ ବୀଜ-ବପନ କରିଥିଲେ ଆଜି ସେଥିରୁ ଘନ ପଲ୍ଲବିତ ବିଶାଳ ତରୁ ସମ୍ଭବ ହୋଇ ଓଡ଼ିଶାର ବେସରକାରୀ କଲେଜ ଶିକ୍ଷକମାନଙ୍କୁ ଛାୟାଦାନ କରୁଛି । କିନ୍ତୁ ଶେଷରେ କଣ ପାଇଲେ ପ୍ରତିଭାଧର ଅଧ୍ୟାପକ ଶ୍ରୀଧର ଦାସ ? କଣ ପାଇଲେ ତାଙ୍କ ପରେ ଅବସର ଗ୍ରହଣ କରିଥିବା ତାଙ୍କ ସମସାମୟିକ ସୁଯୋଗ୍ୟ ସହକର୍ମୀ ଗଣ ? ବିଂଶ ଶତାବ୍ଦୀର ଅନ୍ତିମ ଲଗ୍ନରେ ମାସିକ ତିନିଶହ ଟଙ୍କା ମାତ୍ର ପେନ୍‌ସନ ! ଏଥିପାଇଁ ପୁଣି ଆମ ଶାସନ ଓ ଶିକ୍ଷା ପ୍ରଶାସନର ବଡ଼ ପଣ୍ଡା ମାନଙ୍କର ଏତେ ପ୍ରଚ୍ଛନ୍ନ ଈର୍ଷା ଓ ଶିକ୍ଷକ ସମାଜକୁ ଉପେକ୍ଷା ।

ଆଜି ଗୁରୁଦେବ ଶ୍ରୀଧର ଦାସ ଇହଧାମରେ ନାହାନ୍ତି, କିନ୍ତୁ ତାଙ୍କ ଅଶରୀରୀ ଗୁରୁ ଆତ୍ମା ପ୍ରତ୍ୟେକ ଶିକ୍ଷାନୁଷ୍ଠାନରେ ଶିକ୍ଷକମାନଙ୍କୁ ସଚେତ କରିବା ପାଇଁ ମନ୍ତ୍ର ପାଠ କରୁଛନ୍ତି—ଉତ୍ତିଷ୍ଠିତ, ଜାଗ୍ରତ, ପ୍ରାପ୍ତ ବରାନ୍ ନିବୋଧତ ।



# ଶ୍ରୀଧର ବାବୁଙ୍କ ସ୍ମରଣରେ

ଅଧ୍ୟାପକ ସ୍ମୃତିରଞ୍ଜନ ମୁଖାର୍ଜି

ଆଜି ଖ୍ରୀଷ୍ଟ କଲେଜରୁ ଅନେକ ଅଧ୍ୟାପକ ସୁଦୀର୍ଘ କର୍ମ ଜୀବନର ଅବସାନ ପରେ ଅବସର ଗ୍ରହଣ କରିଛନ୍ତି । କେତେକ ପ୍ରାପ୍ତ ବୟସରେ ଇହଲୋକରୁ ବିଦାୟ ମଧ୍ୟ ନେଇଛନ୍ତି । ଆଜି କଲେଜରେ ପ୍ରବୀଣ ଅଧ୍ୟାପକଙ୍କର ଅଭାବ ନାହିଁ । କିନ୍ତୁ ଯେତେବେଳେ ୧୯୪୪ ଖ୍ରୀଷ୍ଟାବ୍ଦରେ ଖ୍ରୀଷ୍ଟ କଲେଜ ନୂତନ କରି ପ୍ରତିଷ୍ଠିତ ହୋଇଥିଲା ସେତେବେଳେ ସମସ୍ତ ଅଧ୍ୟାପକ ଯୁବକ ଥିଲେ । ସେହି ବର୍ଷ ଅଥବା ବର୍ଷେ ପୂର୍ବେ M.A. ପାଶ୍ କରି ଅଧ୍ୟାପନା କାର୍ଯ୍ୟରେ ସେମାନେ ଯୋଗ ଦେଇଥିଲେ । କଲେଜର ଗାମ୍ଭୀର୍ଯ୍ୟ ରକ୍ଷା କରୁଥିଲେ ସମସ୍ତଙ୍କର ଅତି ପ୍ରିୟ ଓ ଶ୍ରଦ୍ଧାସ୍ପଦ ସ୍ୱର୍ଗତ ବାନାମ୍ବର ଆଚାର୍ଯ୍ୟ, କାରଣ ୨୩।୨୪ ବର୍ଷୀୟ ଅଧ୍ୟାପକ ମାନଙ୍କ ମଧ୍ୟରେ କେବଳ ସେ ୪୪ ବର୍ଷୀୟ ଥିଲେ । ଚାରିବର୍ଷ ପରେ ଆଉ ଜଣେ ପ୍ରବୀଣ ଅଧ୍ୟାପକ କଲେଜରେ ଯୋଗ ଦେଇ କଲେଜର ମର୍ଯ୍ୟାଦା ବୃଦ୍ଧି କରିଥିଲେ । ସଂସ୍କୃତ ବିଭାଗରୁ ଓଡ଼ିଆ ବିଭାଗ ପୃଥକ ହେବା ପରେ ସେ ଥିଲେ କଲେଜର ଓଡ଼ିଆ ବିଭାଗର ପ୍ରଥମ ମୁଖ୍ୟ ଅଧ୍ୟାପକ, ଆମ ସମସ୍ତଙ୍କର ଅତି ନିଜର ଅଧ୍ୟାପକ ଶ୍ରୀଧର ଦାସ । ପ୍ରଥମରୁ ପ୍ରଶାସନିକ କର୍ମଦକ୍ଷତା ଯୋଗୁ ସେ ଅଧ୍ୟକ୍ଷଙ୍କର ଦକ୍ଷିଣ ହସ୍ତ ହୋଇଥିଲେ । ସବୁ ବିଷୟରେ ଶ୍ରୀଧର ବାବୁ । କଲେଜର ପ୍ରାୟ ସବୁ Noticeରେ ଶ୍ରୀଧର ବାବୁଙ୍କର ଦସ୍ତଖତ । କାମ କରିବା ତାଙ୍କର ପେଶା ନୁହେଁ ମାତ୍ର ନିଶା ଥିଲା । ଆମେ କଲେଜର ଶିକ୍ଷା-ବହିର୍ଭୂତ ଦାୟିତ୍ୱ ବହନ କରୁଥିଲୁ ବାଧ୍ୟ ହୋଇ । ସବୁବେଳେ ସେଥିରୁ ନିଷ୍କୃତି ପାଇବାକୁ ଚେଷ୍ଟା କରୁଥିଲୁ । କିନ୍ତୁ ସେ କଲେଜର ଉନ୍ନତି କଳ୍ପେ କିପରି କଠୋର ପରିଶ୍ରମ ଆଗ୍ରହ ଓ ଆନନ୍ଦରେ କରୁଥିଲେ, ତାହା ଯେ ଦେଖି ନାହାନ୍ତି ତାହାଙ୍କୁ ବୁଝାଇବା କଷ୍ଟକର । କଲେଜର କୌଣସି

ଗୋଟିଏ କାମ ଆଉ ପକାଇ ରଖି ହେବ ନାହିଁ ଜାଣି ବିରକ୍ତି ସହକାରେ କରିବାକୁ ଆରମ୍ଭ କରିଛି, ଶ୍ରୀଧର ବାବୁ ଆସି ମୋ ପାଖରେ ବସି 'ଦେଖେ କଣ କରୁଛନ୍ତି' କହି ମୋର କାମଟି ହାତରୁ ଛଡ଼ାଇ ନିଜେ କରି ଦିଅନ୍ତି । ସେତେବେଳେ କଲେଜ ଛୁଟି ହେଉଥିଲା ଦିନ ୧୧।୩୦ରେ, ବିଜ୍ଞାନ ବିଭାଗ ହୋଇ ନ ଥିଲା । ୧୧।୩୦ ପରେ ସାଧାରଣତଃ ଆମେ କେହି କଲେଜରେ ରହୁ ନ ଥିଲୁ । କିନ୍ତୁ ଶ୍ରୀଧର ବାବୁ ଦ୍ୱିପ୍ରହର ୧।୧୫ ପୂର୍ବରୁ କେବେ କଲେଜରୁ ଯାଉ ନ ଥିଲେ ।

ସେ ଯେ କେବଳ ପ୍ରଶାସନିକ କାର୍ଯ୍ୟରେ ବ୍ୟସ୍ତ ରହୁଥିଲେ, ତାହା ନୁହେଁ, ସେ ଜଣେ ଛାତ୍ର ବତ୍ସଳ ସୁଦକ୍ଷ ଶିକ୍ଷକ ମଧ୍ୟ ଥିଲେ । ସେ ସମୟରେ ପ୍ରାୟ ପ୍ରତିବର୍ଷ ତାଙ୍କର ଛାତ୍ର ଓଡ଼ିଆ ଅନର୍ସରେ ବିଶ୍ୱବିଦ୍ୟାଳୟ ପରୀକ୍ଷାରେ ପ୍ରଥମ ଅଥବା ଦ୍ୱିତୀୟ ସ୍ଥାନ ଅଧିକାର କରୁଥିଲେ । ତାଙ୍କର ସୁଯୋଗ୍ୟ ଛାତ୍ରବୃନ୍ଦ ଆଜି ଶିକ୍ଷା ଓ ଅନ୍ୟାନ୍ୟ ବିଭାଗର ଉଚ୍ଚ ପଦ—ପଦବୀରେ ସୁପ୍ରତିଷ୍ଠିତ । ଶିକ୍ଷାପ୍ରତି ତାଙ୍କର ପ୍ରବଳ ସ୍ପୃହା ଥିଲା । ସେ ପିଲାଦିନରୁ ମେଧାବୀ ଛାତ୍ର ରୂପେ ପରିଚିତ ଥିଲେ । ପୁରୀ ଜିଲା ସ୍କୁଲରେ ପାଠ ପଢ଼ୁଥିବା ବେଳେ ବକ୍ତୃତା ଓ ପ୍ରବନ୍ଧ ପ୍ରତିଯୋଗିତାରେ କୃତକାର୍ଯ୍ୟ ହୋଇ ଅନେକ ଗୁଡ଼ିଏ ପଦକ ଲାଭ କରିଥିଲେ । ସେ I. A. ପରୀକ୍ଷାରେ ପାଟନା ବିଶ୍ୱବିଦ୍ୟାଳୟରୁ ପଞ୍ଚମ ସ୍ଥାନ ଅଧିକାର କରି ପ୍ରଥମ ବିଭାଗରେ ଉର୍ତ୍ତୀର୍ଣ୍ଣ ହୋଇଥିଲେ । ସେ ପ୍ରାପ୍ତ ବୟସରେ ଘରେଇ ଛାତ୍ର ହିସାବରେ M. A. ପାଶ୍‌କରି ପ୍ରଧାନ ଶିକ୍ଷକତା କାର୍ଯ୍ୟରୁ ଅବ୍ୟାହତ ନେଇ ଅଧ୍ୟାପନା କାର୍ଯ୍ୟରେ ଯୋଗ ଦେଇଥିଲେ । ସେ ଜୀବନରେ ଶେଷ ପର୍ଯ୍ୟନ୍ତ ପାଠ ପଢ଼ାରେ ନିବିଷ୍ଟ ରହି ଅନେକ ଉପାଦେୟ ପୁସ୍ତକ ରଚନା କରିଥିଲେ । ଶେଷ କେଇ-ବର୍ଷ ଦୃଷ୍ଟିଶକ୍ତି କ୍ଷୀଣ ହୋଇ ଯିବାରୁ ସେ ଆଉ ପଢ଼ାପଢ଼ି କରିପାରୁ ନଥିଲେ, ଏବଂ ମିଲ୍‌ଟନ୍‌ଙ୍କର ଦୁଃଖ ଅନୁଭବ କରୁଥିଲେ । ଶିକ୍ଷାପ୍ରତି ତାଙ୍କର ପ୍ରବଳ ଆଗ୍ରହ ଥିବାରୁ ସେ ତାଙ୍କର ପିଲାମାନଙ୍କର ଶିକ୍ଷା ପ୍ରତି ସତର୍କ ଦୃଷ୍ଟି ଦେଇଥିଲେ । ତାଙ୍କର ତିନିପୁତ୍ର ସରସ୍ୱତୀଙ୍କର ବରପୁତ୍ର । ତାଙ୍କର ଜ୍ୟେଷ୍ଠ-ପୁତ୍ର ବିଶ୍ୱବିଦ୍ୟାଳୟର ପ୍ରତ୍ୟେକ ପରୀକ୍ଷାରେ ପ୍ରଥମ, ଦ୍ୱିତୀୟ ଅଥବା ତୃତୀୟ ସ୍ଥାନ ଅଧିକାର କରି ଉତ୍ତୀର୍ଣ୍ଣ ହୋଇ I. A. S. ପରୀକ୍ଷାରେ ମଧ୍ୟ କୃତିତ୍ୱର ସହିତ ଉତ୍ତୀର୍ଣ୍ଣ ହୋଇଥିଲେ । ସେ ପିତାଙ୍କ ଭଳି ସାହିତ୍ୟ ଓ କଳାପ୍ରେମୀ ମଧ୍ୟ । ତାଙ୍କର ଦ୍ୱିତୀୟ ପୁତ୍ର ଭାରତୀୟ ରେଳ ପ୍ରଶାସନ

ବିଭାଗର ବରିଷ୍ଠ ଅଧିକାରୀ ଏବଂ କନିଷ୍ଠ ପୁତ୍ର ବର୍ତ୍ତମାନ Executive Engineer. ପିତାଙ୍କର ସୂତୀକ୍ଷ୍ଣ ଦୃଷ୍ଟି ଓ ସୁପରିଚାଳନା ବ୍ୟତୀତ ସବୁ ପୁତ୍ର କେବେ କୃତୀ ହୋଇ ପାରନ୍ତି ନାହିଁ । ତାଙ୍କର ପୁତ୍ରମାନେ ଅତୁଳନୀୟ ଦକ୍ଷତାର ଜୀବନ୍ତ ପ୍ରମାଣ ।

ତାଙ୍କ ସହିତ ବରାବର ମୋର ଅତି ଘନିଷ୍ଠ ସମ୍ପର୍କ ଥିଲା । ତାଙ୍କଠାରୁ ଅନେକ ବ୍ୟକ୍ତିଗତ ଉପକାର ପାଇଛି । ଶେଷ ପର୍ଯ୍ୟନ୍ତ ମଝିରେ ମଝିରେ ତାଙ୍କ ସହିତ ମୋର ଦେଖା ସାକ୍ଷାତ୍ ହେଉଥିଲା । ଗୁରୁତର ଅସୁସ୍ଥ ହୋଇ Nursing Homeରେ ଭର୍ତ୍ତି ହୋଇଛନ୍ତି ଖବର ପାଇ ତାଙ୍କୁ ଦେଖିବାକୁ ଯାଇଥିଲି । ସେତେବେଳେ ସେ ଅଚେତ ଅବସ୍ଥାରେ ଥିଲେ । ହଠାତ୍ ଅଳ୍ପସମୟ ପାଇଁ ଚେତା ଆସିଥିଲା । ମୋ ସହିତ ପଦେ ଅଧେ କଥାହୋଇ ପୁଣି ଅଚେତ ହୋଇ ଯାଇଥିଲେ । ପରେ ଶୁଣିଲି ମୁଁ ଚାଲିଆସିବା ପରେ ଅଚେତ ଅବସ୍ଥାରେ ଘଣ୍ଟାଏ ଦୁଇଘଣ୍ଟା ଅନର୍ଗଳ ବଙ୍ଗଳାରେ କଥା କହି ଯାଇଥିଲେ । ମୋ ପ୍ରତି ତାଙ୍କର ସ୍ନେହ କିପରି ଗଭୀର ଥିଲା, ଏଥିରୁ ତାହା ସହଜରେ ଅନୁମେୟ । ଆଜି ତାଙ୍କୁ ମୋର ଆନ୍ତରିକ ଶ୍ରଦ୍ଧା ନିବେଦନ କରି ପରମେଶ୍ୱରଙ୍କ ନିକଟରେ ପ୍ରାର୍ଥନା କରୁଛି ତାଙ୍କର ଅମର ଆତ୍ମା ଚିରଶାନ୍ତି ଲାଭକରୁ ।



# ଅକଳୁଷ କର୍ମଯୋଗୀ

ପ୍ରଫେସର ଜାନକୀ ବଲ୍ଲଭ ମହାନ୍ତି
(ଭରଦ୍ୱାଜ)

ଦୀର୍ଘ ପଞ୍ଚତିରିଶ ବର୍ଷ ଶିକ୍ଷା ବିଭଗରେ କର୍ମଜୀବନ ଅତିବାହିତ କରିବା ମଧ୍ୟରେ ମୋତେ ବହୁ ଶିକ୍ଷକ ଓ ସହକର୍ମୀଙ୍କ ସଂପର୍କରେ ଆସିବାକୁ ପଡ଼ିଛି । ସେମାନଙ୍କ ମଧ୍ୟରୁ ଅନେକ ଆଜି ସ୍ମୃତିରେ ମଳିନ ହୋଇ ଆସିଲେଣି । ମାତ୍ର ସ୍ୱର୍ଗତ ଶ୍ରୀଧର ଦାସ ଏବେ ମଧ୍ୟ ମୋ ସ୍ମୃତିରେ ଉଜ୍ଜ୍ୱଳ ହୋଇ ରହି ଯାଇଛନ୍ତି । ତାଙ୍କ ପରି କର୍ତ୍ତବ୍ୟପରାୟଣ, ସଫଳ, ସଚ୍ଚୋଟ ଲୋକ ମୁଁ ଖୁବ୍ କମ୍ ଦେଖିଛି ବୋଲି ମୋର ଧାରଣା । ସେ ମୋର ସହକର୍ମୀ ନଥିଲେ । କିମ୍ବା ତାଙ୍କ ସହ ଯେ ମୁଁ ଖୁବ ଘନିଷ୍ଠ ହୋଇ ପାରିଥିଲି ଏହା ମଧ୍ୟ ଦୃଢ଼ତାର ସହିତ କହି ପାରିବି ନାହିଁ । ତଥାପି ତାଙ୍କ ବ୍ୟକ୍ତିତ୍ୱ ସଂପର୍କରେ ମୁଁ ଯେତିକି ଜାଣିବାକୁ ପାଇଛି ତାହା ମୋ ମନରେ ଅମଳିନ ରହି ଯାଇଛି ।

ରେଭେନ୍‌ସା କଲେଜରେ ଅଧ୍ୟାପକ ଭବେ ମୁଁ ଯୋଗ ଦେବା ବେଳକୁ ( ୧୯୫୫ ) ସେ ଥିଲେ କ୍ରାଇଷ୍ଟ କଲେଜର ଅଧ୍ୟାପକ । ମୋ ଠାରୁ ଯଥେଷ୍ଟ ବରିଷ୍ଠ, ବୟସରେ ତଥା ଶିକ୍ଷକ ଭବରେ । ଏଣୁ ଉତ୍କଳ ବିଶ୍ୱବିଦ୍ୟାଳୟ ଓ ମାଧ୍ୟମିକ ଶିକ୍ଷା ବୋର୍ଡର ପରୀକ୍ଷା ସଂକ୍ରାନ୍ତୀୟ ବିଭିନ୍ନ କାମରେ ତାଙ୍କ ସହ କାମ କରିବାର ସୁଯୋଗ ମୋତେ ବହୁବାର ମିଳିଥିଲା । ସମ୍ଭବତଃ ଏହି ଭବରେ ଆମ ପରିଚୟର ସୂତ୍ରପାତ ହୋଇଥିଲା । ସେତେବେଳକୁ ଶ୍ରୀଧର ବାବୁ ପରିଣତବୟସ, ବାର୍ଦ୍ଧକ୍ୟର ଦ୍ୱାର ଦେଶରେ । ମାତ୍ର ବାର୍ଦ୍ଧକ୍ୟ ଯେପରି ତାଙ୍କୁ ଛୁଇଁ ମଧ୍ୟ ଛୁଇଁ ପାରି ନଥିଲା ।

କୃଷ୍ଣକାୟ, ଦୀର୍ଘ, ସବଳ ଦେହ; ଦେଖିବାକୁ କିଞ୍ଚିତ ରୁକ୍ଷ, ହୁଏତ ଅନାକର୍ଷଣୀୟ । ପୋଷାକ ପରିଚ୍ଛଦରେ ତାଙ୍କର କୋଣସି ବିଶେଷତ୍ୱ ନଥିଲା । ତାହା ଥିଲା ଅତି ସରଳ, କେବଳ ଧୋତି ଓ ପଞ୍ଜାବୀ । ମାତ୍ର ବିଶେଷତ୍ୱ ଥିଲା ତାଙ୍କର ଚଳଣୀରେ । ସେ ଥିଲେ ଅତ୍ୟନ୍ତ ନିରଳସ ଓ ଚିର କର୍ମମୟ । ସବୁବେଳେ ନିଜକୁ ସେ କିଛି ନା କିଛି କାମରେ ନିୟୋଜିତ ରଖୁଥିଲେ । ତାଙ୍କର ଜୀବନ ଥିଲା ସଂଯତ, ଶୃଙ୍ଖଳିତ । କଲେଜ ଅଫିସ୍‌ର ଅଧିକାଂଶ ଦାୟିତ୍ୱପୂର୍ଣ୍ଣ କାମ ସେ ଏକାକୀ ତୁଲାଇ ନେଉଥିଲେ; ଚିଠି ପତ୍ରର ମୂଳ କପି ପ୍ରସ୍ତୁତ କରିବା ଠାରୁ ଟାଇପ୍ କରି ସେ ଗୁଡ଼ିକୁ ପଠାଇବା ପର୍ଯ୍ୟନ୍ତ ।

ସେ ଥିଲେ ଖୁବ ମେଟିକୁଲସ୍, ସବୁ କିଛି ଟିକିନିଖି ଦେଖିବା ଲୋକ । ଯେଉଁ କାମଟି କରୁଥିଲେ ତାକୁ ନିଷ୍ଠାସହ ଭଲ ଭବରେ କରୁଥିଲେ । ଅଧାପନ୍ତରିଆ, ଉପର ଠାଉରିଆ ବା ଏଣୁ ତେଣୁ ଭବରେ କରି ଦେଉ ନଥିଲେ । ତେଣୁ ତାଙ୍କ କାମଥିଲା ସୁନ୍ଦର, ତ୍ରୁଟିହୀନ । କେତେଥର ସେ ମୁଖ୍ୟ ପରୀକ୍ଷକ ଓ ମୁଁ ସହକାରୀ ପରୀକ୍ଷକ ଭବରେ କାମ କରିଛୁ । କେତେଥର ମଧ୍ୟ ପରୀକ୍ଷା ପ୍ରଶ୍ନର ସମୀକ୍ଷକ ଭବରେ କାମ କରିଛୁ । ସବୁ କ୍ଷେତ୍ରରେ ମୁଁ ତାଙ୍କର ସେହି ଗୁଣର ନିଦର୍ଶନ ଦେଖିବାକୁ ପାଇଛି । ବହୁ ବରିଷ୍ଠ ଅଧ୍ୟାପକଙ୍କ ସଙ୍ଗେ କାମ କରିଥିଲେହେଁ ତାଙ୍କଭଳି ପୁଙ୍ଖାନୁପୁଙ୍ଖ ବିଶ୍ୱରବନ୍ତ ବ୍ୟକ୍ତି ମୁଁ ଖୁବ୍ କମ୍ ଦେଖିଛି । ସେ ମଧ୍ୟ ଥିଲେ ଖୁବ୍ ସଚ୍ଚୋଟ, ନୀତିନିଷ୍ଠ ଓ ଆଦର୍ଶବାଦୀ । ନିଜେ ପ୍ରତାରିତ ହୋଇଥିଲେହେଁ କାହାକୁ ଠକାଇ ସେ ଲଭବାନ ହେବାକୁ ଗ୍ରହିଁ ନଥିଲେ । ନିଜ ଉଦ୍ୟମରେ ଆପଣାକୁ ଉନ୍ନତ କରାଇବାକୁ ସେ ଥିଲେ ସତତ ଯତ୍ନଶୀଳ । ଉଦ୍ୟମ କରୁ କରୁ ଯାହା ମିଳିଲା ସେଥିରେ ସେ ସନ୍ତୁଷ୍ଟ ରହି ଆସିଛନ୍ତି । ଅନ୍ୟର ସମୃଦ୍ଧି, ସାଫଲ୍ୟ ବା ସଂପଦ ଲଗି ଈର୍ଷା ବା ହିଂସା ଜର୍ଜରିତ ହୋଇ ନାହାନ୍ତି ।

ଆପାତ ରୁକ୍ଷ ମନେ ହେଉଥିବା ଏହି ବ୍ୟକ୍ତିଙ୍କର ହୃଦୟ କିପରି କୋମଳ, ସ୍ନେହପ୍ରବଣ ଓ ସରସ ତାହା ତାଙ୍କ ସଂପର୍କରେ ଆସିବା ପରେହିଁ ଜାଣି ପାରିଥିଲି । ଆହୁରି ଭଲ ଭବରେ ଜାଣିପାରି ଥିଲି ତାଙ୍କର ଅପ୍ରକାଶିତ ଆତ୍ମଚରିତ 'ସୁଅ ମୁହଁରେ ପତର' ଗ୍ରନ୍ଥଟି ପଢ଼ିବାକୁ ପାଇ ଜୀବନରେ ସେ ବହୁ ଘାତ ପ୍ରତିଘାତ ସହିଛନ୍ତି । ଅତ୍ୟନ୍ତ ଦୁଃସ୍ଥ ଅବସ୍ଥାରୁ

ହିଁ କଠୋର ପରିଶ୍ରମ ଓ କଷ୍ଟ ସହିଷ୍ଣୁତା ଫଳରେ ଆପଣାର ଉନ୍ନତି କରି ପାରିଥିଲେ । ଶେଷ ପର୍ଯ୍ୟନ୍ତ ସେ ଥିଲେ କର୍ମଠ । ଅଶୀବର୍ଷ ବୟସରେ ସେ ଦୃଷ୍ଟିଶକ୍ତି ହରାଇ କ୍ରମେ ଅକର୍ମଣ୍ୟ ହୋଇ ପଡ଼ିଥିଲେ ।

ମୋର ବିଶ୍ୱାସ, ଶ୍ରୀଧର ବାବୁଙ୍କ ଜୀବନ ସାର୍ଥକ ଓ ସାଫଲ୍ୟ ମଣ୍ଡିତ । ଶୈଶବରୁ ହିଁ ଦୁଃସ୍ଥ ପରିସ୍ଥିତି ତାଙ୍କୁ ଆତ୍ମସ୍ଥ, ଆତ୍ମସଚେତନ ଓ ଆତ୍ମ ପ୍ରତ୍ୟୟଶୀଳ କରାଇ ଦେଇଥିଲା । ଫଳରେ ସେ ହୋଇ ପଡ଼ିଥିଲେ ଖୁବ୍ ହିସାବୀ, ହାତେ ମାପି ଗୋଡ଼ଖଣ୍ଡେ ଚାଲିବାରେ ଧୁରନ୍ଧର । ଦାରିଦ୍ର୍ୟ ବିରୁଦ୍ଧରେ ସଂଗ୍ରାମ କରି ସେ ଜୟଯୁକ୍ତ ହୋଇ ପାରିଥିଲେ । ମାତ୍ର ଏଥିପାଇଁ ସେ ନୈତିକତା ବା ଆତ୍ମ ସମ୍ମାନକୁ ବଳି ଦେଇ ନାହାନ୍ତି । ଦୃଢ଼ ଆତ୍ମବିଶ୍ୱାସ ଓ କଠୋର ପରିଶ୍ରମ ଫଳରେ ହିଁ ସେ ଜୀବନରେ ସଫଳକାମ ହୋଇ ପାରିଥିଲେ । ସଫଳତାର ଅନ୍ତରାଳରେ ତାହାଙ୍କ ସହଧର୍ମିଣୀଙ୍କ ଦାନ ମଧ୍ୟ କେତେକ ପରିମାଣରେ ନିହିତ ଥିବା ଅନୁମେୟ ।

ସୀମିତ ସମ୍ବଳ ସତ୍ତ୍ୱେ ସେ ଆପଣାର ସନ୍ତାନମାନଙ୍କର ଉଚ୍ଚ ଶିକ୍ଷାର ବ୍ୟବସ୍ଥା କରିଛନ୍ତି, ସେମାନଙ୍କୁ ଉପଯୁକ୍ତ ଭାବେ ମଧ୍ୟ ଗଢ଼ି ଯାଇଛନ୍ତି । ସେମାନେ ଆଜି ବିଭିନ୍ନ କ୍ଷେତ୍ରରେ ସୁପ୍ରତିଷ୍ଠିତ । ସେମାନଙ୍କ ସାଫଲ୍ୟ ପଛରେ ଶ୍ରୀଧର ବାବୁଙ୍କ 'ସୁକୃତ' ଯେ ନିହିତ ଏହା କହିବା ଅନାବଶ୍ୟକ । ଏ ଦେଶର ସନ୍ତାନ ମାନଙ୍କ ଲାଗି ମଧ୍ୟ ସେ ବହୁ ଉପାଦେୟ ଗ୍ରନ୍ଥ ରଚନା କରିଯାଇ ଅଛନ୍ତି । ସେ ଗୁଡ଼ିକର ଉପାଦେୟତା ସ୍ୱତନ୍ତ୍ର ଆଲୋଚନା ସାପେକ୍ଷ ।

ପିତୃପ୍ରତିମ ଶ୍ରୀଧର ବାବୁ କେଜାଣି କାହିଁକି ମୋ ପ୍ରତି ଖୁବ୍ ସ୍ନେହଶୀଳ ଥିଲେ । ବୋଧହୁଏ ସେ ମୋ ଠାରେ ଦେଖୁଥିଲେ ତାଙ୍କରି ଭଳି ଏକ ସଂଗ୍ରାମଶୀଳ କ୍ଷତାକ୍ତ ବ୍ୟକ୍ତିକୁ ଯିଏ ଆପଣା ଉଦ୍ୟମରେ ହିଁ ଏକ ପ୍ରକାର ନିଜକୁ ଗଢ଼ିଛି । ସେତେବେଳେ ପାଠ୍ୟପୁସ୍ତକ ସବୁ ଜାତୀୟ କରଣ ହୋଇ ନ ଥାଏ । ଦିନେ ସେ ପ୍ରସ୍ତାବ କଲେ—ଜାନକୀ ବାବୁ ! ଆପଣଙ୍କର ପାଠ୍ୟ ପୁସ୍ତକ ରଚନାରେ ଅଭିଜ୍ଞତା ଅଛି । ଶିଶୁ ଶ୍ରେଣୀ ପାଇଁ ପାଠ୍ୟପୁସ୍ତକ ମନୋନୟନ ପାଇଁ ବିଜ୍ଞାପନ ବାହାରିଛି । ଆମର ଗୋଟାଏ ପ୍ରସ୍ତୁତ କଲେ କିପରି ହୁଅନ୍ତା !

ମୁଁ କହିଲି—ଏମ୍.ଏ. ପରୀକ୍ଷା ଦେଇ ଅନିଶ୍ଚିତ ଭବେ ପୁରୀରେ କିଛି ଦିନ ରହୁଥିଲବେଳେ ପୁରୀର ଜଣେ ପ୍ରକାଶକଙ୍କ ଅନୁରୋଧରେ ୨ୟ ୩ୟ ଶ୍ରେଣୀ ପାଠ୍ୟ ପୁସ୍ତକ ଲେଖି ଦେଇଥିଲି । ସେତେବେଳେ ପଣ୍ଡିତ ନୀଳକଣ୍ଠ ଗୋଦାବରୀଶ, ରାମକୃଷ୍ଣ ନନ୍ଦଙ୍କ ପୁସ୍ତକ ସହ ମୋ ବହିଟି କେଜାଣି କିପରି ମନୋନୀତ ହୋଇ ଯାଇଥିଲ । ପ୍ରକାଶକ ମୋତେ ୧୦୦ ଟଙ୍କା ମାତ୍ର ଦେଇଥିଲେ । ତା'ପରେ ମୋର ସରକାରୀ ଗ୍ଭକିରି ହୋଇଗଲ । ପ୍ରକାଶକ ମୋତେ ଆଉ ଟଙ୍କା ଦେଇ ନଥିଲେ । ମୁଁ ମଧ୍ୟ ଆଉ ପାଠ୍ୟ ପୁସ୍ତକ ଲେଖି-ବାକୁ କେବେ ଆଗ୍ରହୀ ହୋଇ ନାହିଁ । ଆପଣ ଯଦି ଗ୍ଭହୁଁଛନ୍ତି ତେବେ ମୁଁ କିଛି ଲେଖି ପାରେ ।

ସେ କହିଲେ—ଆପଣ କବିତା ଲେଖନ୍ତି, କବିତା ଅଂଶ ତକ ଆପଣ ଲେଖନ୍ତୁ—ଅବଶିଷ୍ଟ ମୁଁ କରେଇ ନେବି ।

ତାପରେ ଆମେ ଦୁହେଁ କିଏ କଣ ଲେଖିବୁ ତାର ଏକ ଖସଡ଼ା ପ୍ରସ୍ତୁତ ହୋଇଗଲ । କେତେ ଦିନ ମଧ୍ୟରେ ଲେଖା ମଧ୍ୟ ପ୍ରସ୍ତୁତ ହୋଇ ଯାଇଥିଲ । ଏଇ ପାଠ୍ୟ ପୁସ୍ତକ ରଚନାର ଅଧିକାଂଶ କାମ ଶ୍ରୀଧର ବାବୁହିଁ କରିଥିଲେ । ନିଜ ହାତରେ ସେ ତାକୁ ଉତାରି ଛପାଇବାର ବ୍ୟବସ୍ଥା କରିଥିଲେ । ଏହା ହେଉଛି ୧୯୫୯ ମସିହାର କଥା । ବହିଟି କିନ୍ତୁ ମନୋନୀତ ହୋଇ ପାରି ନ ଥିଲ । ଯେତେ ଦୂର ମନେ ପଡ଼ୁଛି ବହିଟିର ନାମ ଥିଲ 'କୌତୁକ ପାଠ' ।

ବରିଷ୍ଠ ଅଧ୍ୟାପକ ହେଲେ ହେଁ ଜ୍ଞାନୀ, ଗୁଣୀ ବୋଲି ତାଙ୍କର ଅଭିମାନ ନ ଥିଲ, କିମ୍ବା ଲେଖକ ଭବରେ ଯଶସ୍ୱୀ ହେବାକୁ ମଧ୍ୟ ସେ କାମନା କରି ନ ଥିଲେ । ତଥାପି ସୁଶିକ୍ଷକ ଓ ବହୁ ଗ୍ରନ୍ଥର ରଚୟିତା ଭବେ ସେ ସମାଜ ଓ ସାହିତ୍ୟର ଯେଉଁ ଉପକାର କରି ଯାଇଛନ୍ତି ସେଥି-ପାଇଁ ସେ ଆମର ନମସ୍ୟ ଓ ସ୍ମରଣୀୟ । କେହି କେହି କହନ୍ତି, ଉଇଲିଅମ ସେକ୍ସପିଅର ନାମ ଯଶ ବା ସାହିତ୍ୟ ଉନ୍ନତି ଲକ୍ଷ୍ୟରେ ନାଟକ ରଚନାରେ ବ୍ରତୀ ହୋଇ ନ ଥିଲେ । ଅର୍ଥ ଉପାର୍ଜନ ହିଁ ଥିଲ ତାଙ୍କର ଲକ୍ଷ୍ୟ । ସେହିପରି କୁଆଡ଼େ ଥିଲେ ବାଲଜାକ୍ । ମୋର ମନେହୁଏ ଶ୍ରୀଧର ବାବୁ ସେହିପରି ଅର୍ଥ ଲକ୍ଷ୍ୟରେ ହିଁ ବହୁ ଗ୍ରନ୍ଥର ଅନୁବାଦ,ଅଭିଧାନ ସଂକଳନ

ବ୍ୟାକରଣ ଗ୍ରନ୍ଥ ଓ ବହୁ ଶିଶୁ ଉପଯୋଗୀ ସାହିତ୍ୟ ରଚନାରେ ଲାଗି ପଡ଼ିଥିଲେ । ଏଇ ଗ୍ରନ୍ଥ ସମୂହ ଯେ ନିଶ୍ଚିତ ଭାବେ ଉପାଦେୟ ଓ ତାଙ୍କୁ ସ୍ମରଣୀୟ ରଖିବ ଏ ବିଷୟରେ ସନ୍ଦେହର ଅବକାଶ ନାହିଁ । ଦୀର୍ଘ ଜୀବନ କାଳ ମଧ୍ୟରେ ଶ୍ରୀଧର ବାବୁ ବହୁ ଅଭିଜ୍ଞତା ଓ ଅନୁଭୂତି ଅର୍ଜନ କରିଥିଲେ । ସେ ସଂପର୍କରେ ସେ ବେଳେ ବେଳେ ସରସଭାବେ କିଛି କିଛି ବର୍ଣ୍ଣନା କରିଥାନ୍ତି । ଇଛା କରିଥିଲେ ସେ ଭଲ ଗଳ୍ପ ଉପନ୍ୟାସ ମଧ୍ୟ ଲେଖିପାରି ଥାନ୍ତେ । ମାତ୍ର ସେ ଚିତ୍ତବିନୋଦକ ଗ୍ରନ୍ଥ ରଚନା ପରିବର୍ତ୍ତେ ସହାୟକ ଗ୍ରନ୍ଥ ରଚନାରେହିଁ ମୁଖ୍ୟତଃ ଆତ୍ମନିୟୋଗ କରିଥିଲେ ।

ବ୍ୟକ୍ତିଗତ ସାଧନା ଓ ଉଦ୍ୟମର ଉପଯୁକ୍ତ ପୁରସ୍କାର ଲାଭ ନିଶ୍ଚିତ ଭାବେ ଗୌରବାବହ । ଅତୀତରେ ଏହାର ବହୁ ଦୃଷ୍ଟାନ୍ତ ଦେଖିବାକୁ ମିଳୁଥିଲା । ସେଥିପାଇଁ ଅନେକ ସାଧନାରତ ହେଉଥିଲେ । ମାତ୍ର ଏବେ ବୋଧହୁଏ ଅବସ୍ଥା ବଦଳି ଯାଇଛି । ଅନେକେ ନିଜର ନିଷ୍ଠା, ସାଧନା ଅପେକ୍ଷା ଭିନ୍ନ ପନ୍ଥା ଅନୁସରଣ କରୁଛନ୍ତି ଓ ତଦ୍ୱାରା ମଧ୍ୟ କିଛି ସଫଳତା ଅର୍ଜନ କରିବାକୁ ସମର୍ଥ ହେଉଛନ୍ତି । ଫଳରେ ନିର୍ମଳ ବ୍ୟକ୍ତିତ୍ୱ ଓ ସାଧନାର ଦୃଷ୍ଟାନ୍ତ କମିଯାଉଛି । ବହୁ ଅନିପୁଣ, ଅନୁପଯୁକ୍ତ ବ୍ୟକ୍ତି ସମାଜର ବିଭିନ୍ନ କ୍ଷେତ୍ରରେ ତଥା କଥିତ ସାଫଲ୍ୟର ଅଧିକାରୀ ହେଉଛନ୍ତି । ସେମାନଙ୍କ ସଫଳତା ପଛରେ ଅନେକ କଳୁଷ କାଳିମାର ବିଷୟ ଶୁଣିବାକୁ ମିଳୁଛି । ମାତ୍ର ମୁଁ ଯେତେଦୂର ଜାଣେ ଶ୍ରୀଧର ବାବୁ ଥିଲେ ଜଣେ ଅକଳୁଷ କର୍ମଯୋଗୀ ।



# କର୍ମଯୋଗୀ ଶ୍ରୀଧର ଦାସ

**ଅଧ୍ୟାପକ ନିତ୍ୟାନନ୍ଦ ଦର୍ଜୀ**

୧୯୪୯ ସାଲ ଜୁଲାଇ ୨୬ ତାରିଖ । ଖ୍ରୀଷ୍ଟ ମହାବିଦ୍ୟାଳୟ ( ଉତ୍କଳ ଖ୍ରୀଷ୍ଟିୟାନ୍ କଲେଜ )ରେ ଅଧ୍ୟାପକ ରୂପେ ଯୋଗ ଦେଲି । କେବେ ଭାବି ନଥିଲି ଏଇଠି ଅଟକି ଯିବି ବୋଲି । ପରୀକ୍ଷା ଗୁଡ଼ିକରେ ଭଲ ନମ୍ବର ରଖି ପାସ୍ କରିଥିବାରୁ ମନରେ ଉଚ୍ଚାକାଙ୍କ୍ଷା ଥିଲା । ବଡ଼ ଚାକିରୀ ପାଇଁ ନିଜକୁ ଯୋଗ୍ୟ ବୋଲି ଭାବୁଥିଲି । ଅବସ୍ଥା ଚକ୍ରରେ ପଡ଼ି ଏହି ମହାବିଦ୍ୟାଳୟରୁହିଁ ଅଧ୍ୟାପକ ଚାକିରୀରୁ ଅବସର ନେଲି । କିନ୍ତୁ ମନରେ ଗ୍ଲାନି ନାହିଁ ।

ଗ୍ଲାନି ନାହିଁ । କାରଣ ଖ୍ରୀଷ୍ଟ ମହାବିଦ୍ୟାଳୟ ମୋତେ ଉଚ୍ଚ ପଦ ପଦବୀର ଗୌରବ ଦେଇ ନଥିଲେ ସୁଦ୍ଧା ଦେଇଛି ଏକ ସୁସ୍ଥ ଆତ୍ମୀୟତା-ଭରା ପରିବେଶ, ଏକ ସାରସ୍ୱତ ରସସିକ୍ତ ଆନନ୍ଦ ମୁଖର କର୍ମ କ୍ଷେତ୍ର ଏବଂ ଏକ ନିରଡମ୍ବର ସାଧୁ-ସରଳ ଜୀବନ ପାଇଁ ପ୍ରେରଣା ଓ ଅବଲମ୍ବନ ।

ସେ ସମୟରେ ଭାରତର ବିଭିନ୍ନ ପ୍ରାନ୍ତର ଆମେ ସର୍ବମୋଟ ମାତ୍ର ବାରଜଣ ବ୍ୟକ୍ତି ଅଧ୍ୟାପନା କାର୍ଯ୍ୟ ତୁଲାଉ ଥିଲୁ । ଆମ ଭିତରୁ ଜଣେ ଶ୍ରୀଧର ଦାସ । ବୟସରେ ମୋ'ଠାରୁ ସେ କୋଡ଼ିଏ ବର୍ଷ ବଡ଼; ଅଭିଜ୍ଞତା, କର୍ମକୁଶଳତା, ଜ୍ଞାନ ଗାରିମାରେ ତ ବହୁ ଉଚ୍ଚରେ । ତଥାପି ଆମେ ସମଧର୍ମୀ, ସହକର୍ମୀ, ବନ୍ଧୁ, ଭାଇ ଭାଇ । ସିନିଅର-ଜୁନିଅର ଭେଦଭାବ ନାହିଁ । ପ୍ରବୀଣ-ଅର୍ବାଚୀନ ବିଚାର ନାହିଁ । ଧର୍ମ, ସଂପ୍ରଦାୟ, ମାତୃଭାଷା, ଚାଲିଚଳଣୀରେ ପାର୍ଥକ୍ୟ ଥିଲେ ସୁଦ୍ଧା ଆମେ ସମସ୍ତେ ଗୋଟିଏ ପରିବାରର ସଭ୍ୟମାନଙ୍କ ପରି ଚଳୁଥିଲୁ । ଅଧ୍ୟକ୍ଷଙ୍କୁ ଗୁରୁଜନ ଓ ପରିବାରର ମୁଖ୍ୟ

ହିସାବରେ ବାଦ ଦେଲେ, ଆମ ଭିତରେ ଥିଲା ଏକ ସମାନତା ଭାବ, ଏକ ଆନ୍ତରିକ ସୌହାର୍ଦ୍ଦ୍ୟ, ସ୍ନେହ-ମମତା ଭରା ପ୍ରାଣ-ପ୍ରାଚୁର୍ଯ୍ୟ ।

ଶ୍ରୀଧର ବାବୁଙ୍କ ଉପରେ ଅଧ୍ୟକ୍ଷଙ୍କ ଅଗାଧ ବିଶ୍ୱାସ ଥିଲା । ଆମମାନଙ୍କ ଭିତରୁ ଜଣକୁ ଗୋଟିଏ ଦୁଇଟି କରି ପରୀକ୍ଷା କିମ୍ବା କଲେଜ ସଂସଦ କିମ୍ବା ଖେଳ-କସରତ କିମ୍ବା ନାଟ୍ୟ ସଂସ୍ଥା ଇତ୍ୟାଦିର ଦାୟିତ୍ୱ ସେ ଦେଉଥିଲେ । କିନ୍ତୁ ଶ୍ରୀଧର ବାବୁଙ୍କୁ ଅଫିସର ଯାବତୀୟ କାମର ଦାୟିତ୍ୱ ନେବାକୁ ପଡୁଥିଲା । ସେତେବେଳେ ଉପାଧ୍ୟକ୍ଷ ପଦ ନଥିଲା । କିନ୍ତୁ ଶ୍ରୀଧର ବାବୁ ସ୍ୱେଚ୍ଛାରେ ଆଗ୍ରହର ସହିତ ଅଫିସର ଏତେ କାର୍ଯ୍ୟ କରୁଥିଲେ ଯେ ଅନେକେ ତାହାଙ୍କୁ ଉପାଧ୍ୟକ୍ଷ ବୋଲି ମନେ କରୁଥିଲେ । ଅଫିସରୁ ଯାଉଥିବା ଅନେକ ଚିଠି ତାଙ୍କ ଦସ୍ତଖତ ତଳେ 'ଫର ପ୍ରିନ୍ସପାଲ' ଟାଇପ୍ କରି ପଠା ଯାଉଥିଲା । ତେଣୁ ମୁଁ ଥଟ୍ଟାରେ ତାହାଙ୍କୁ 'ଫର ପ୍ରିନ୍ସପାଲ୍' ବୋଲି ଡାକୁଥିଲି ।

କେତେ ବର୍ଷ ଧରି ଇଣ୍ଟର ମିଡ଼ିଏଟ୍ ପରୀକ୍ଷାର୍ଥୀମାନେ ସାଧାରଣ ଜ୍ଞାନ ବିଷୟରେ ଗୋଟିଏ ପତ୍ର ପରୀକ୍ଷା ଦେଉଥିଲେ । ଆମ ଅଧ୍ୟକ୍ଷ ଅନେକ ବର୍ଷ ତାହାର ମୁଖ୍ୟ ପରୀକ୍ଷକ ନିଯୁକ୍ତ ହେଉଥିଲେ । ପ୍ରଶ୍ନ ପତ୍ରର ଉତ୍ତର ସ୍ଥିର କରିବା ଦାୟିତ୍ୱ ନେଉଥିଲେ ଶ୍ରୀଧର ବାବୁ । ସେ ଥିଲେ ବିବିଧ ବିଷୟକ ଜ୍ଞାନର ଏକ ଅସରନ୍ତି ଭଣ୍ଡାର । ଯେ କୌଣସି ପ୍ରଶ୍ନର ଉତ୍ତର ତତ୍‌କ୍ଷଣାତ୍ ମୁହେଁ ମୁହେଁ ମିଳି ଯାଉଥିଲା । ଯଦି ସାମାନ୍ୟ ସନ୍ଦେହ ହୁଏ, ପରେ ଦେଖିବା ବୋଲି କାମକୁ ପକାଇ ରଖିବାର ଧୈର୍ଯ୍ୟ ନାହିଁ । ସଙ୍ଗେ ସଙ୍ଗେ ପୁସ୍ତକାଗାରକୁ ଯାଇ ଯଥାଯଥ ଗ୍ରନ୍ଥରୁ ସନ୍ଦେହ ମୋଚନର ବ୍ୟବସ୍ଥାରେ ଏବଂ ତାହାକୁ ସ୍ମୃତିରେ ରଖିବା ପାଇଁ ପ୍ରୟାସରେ ଅବହେଳା ନାହିଁ । ଶ୍ରୀଧର ବାବୁଙ୍କ ଜ୍ଞାନ ପିପାସାର ଅନ୍ତ ନଥିଲା, ଜ୍ଞାନ ଆହରଣ କୌଣସି ନିର୍ଦ୍ଦିଷ୍ଟ ବିଭାଗରେ ସୀମିତ ନଥିଲା । ମୁଁ ତାହାଙ୍କୁ ନାମ ଦେଇଥିଲି ଚଳନ୍ତି ଜ୍ଞାନକୋଷ, ମୁଭିଂ ଏନ୍‌ସାଇକ୍ଲୋପେଡ଼ିଆ ।

କାମ ଯେତେ ଅଡୁଆ, ତହିଁରେ ଶ୍ରୀଧର ବାବୁଙ୍କ ଆଗ୍ରହ ସେତେ ବେଶୀ । ଶାରୀରିକ ହେଉ କି ମାନସିକ ହେଉ, ଯେ କୌଣସି କାର୍ଯ୍ୟରେ ଜଣେ ବନ୍ଧୁ ସମସ୍ୟାର ସମ୍ମୁଖୀନ ହେଉଥିବା ଦେଖିବା ମାତ୍ରେ ଶ୍ରୀଧର

ବାବୁ ସ୍ୱତଃ ତାହାଙ୍କୁ ସାହାଯ୍ୟ କରିବାକୁ ଆଗେଇ ଆସୁଥିଲେ । ଅନ୍ୟଙ୍କ କାମ ଛଡ଼ାଇ ନେଇ ନିଜେ କରିଦେବା ତାଙ୍କର ଏକ ଅଦମନୀୟ ଅଭ୍ୟାସ ।

ମହାବିଦ୍ୟାଳୟର ନିର୍ଘଣ୍ଟ ନିର୍ଦ୍ଦିଷ୍ଟ ନିଜର କାର୍ଯ୍ୟ ତଥା ନିଜେ ଉପରେ ପଡ଼ି ହାତକୁ ନେଇଥିବା ଅନ୍ୟଲୋକର ଅପର୍ଯ୍ୟାପ୍ତ କାର୍ଯ୍ୟରୁ ସାମାନ୍ୟ ଅବ୍ୟାହତି ପାଇଲେ ଶ୍ରୀଧର ବାବୁ ଜଣେ ଦୁଇଜଣ କାହାକୁ ସଙ୍ଗରେ ନେଇ ଚା' ପିଇବାକୁ ଯାଉଥିଲେ ଚଣ୍ଡୀ ହୋଟେଲକୁ । ଗପ୍ପାଯାକ ବକର୍ ବକର୍ । ସ୍ୱାନୁଭୂତିଲବ୍ଧ ଅସଂଖ୍ୟ ଇତିବୃତ୍ତର ପୁନରାବୃତ୍ତି । ତୁମେ କହ, ସେ ଶୁଣିବେ । ନହେଲେ ସେ କହିବେ, ତୁମେ ଶୁଣ । ହୋଟେଲରେ ପହଞ୍ଚି ବରାଦି ଚା' ପହଞ୍ଚିବା ପର୍ଯ୍ୟନ୍ତ ଅବିଶ୍ରାନ୍ତ ଭାବେ ଗପର ସ୍ରୁଅ ଛୁଟିଥିବ । ମିନିଟିଏ ଗପ ବନ୍ଦ ହେଲେ ଦେଖିବ, ଶ୍ରୀଧର ବାବୁ ଟେବୁଲରେ ପଡ଼ିଥିବା କେଉଁ କାଳର ପୁରୁଣା ଖବର କାଗଜରୁ ବା ତଳେ ପଡ଼ିଥିବା ଠୁଙ୍ଗା ଛିଣ୍ଡାଇ ସେଥିରୁ କଣ ଗୋଟାଏ ପଢ଼ୁଛନ୍ତି । ବିନା କାମରେ ଗୋଟିଏ ମୁହୂର୍ତ୍ତ ସୁଦ୍ଧା ଚୁପ୍ ହୋଇ ବସି ରହିବା ମୁଁ ତାହାଙ୍କୁ ଦେଖିନାହିଁ ।

ଅଧ୍ୟୟନ, ଅଧ୍ୟାପନା, ସ୍ୱରଚନା ଓ ସମାଲୋଚନା— ଏହାହିଁ ଥିଲା ଶ୍ରୀଧର ବାବୁଙ୍କ ଜୀବନର ମୁଖ୍ୟ ଆଭିମୁଖ୍ୟ । ସମ୍ପୂର୍ଣ୍ଣ ଅସମର୍ଥ ହୋଇ ନ ଯିବା ପର୍ଯ୍ୟନ୍ତ ଜୀବନ ସନ୍ଧ୍ୟାର କ୍ଷୀଣାଲୋକରେ ମଧ୍ୟ ନିରବଚ୍ଛିନ୍ନଭାବେ ସେ ଏଗୁଡ଼ିକର ଅନୁଶୀଳନରେ ନିଜକୁ ନିୟୋଜିତ ରଖିଥିଲେ ।

ମୋ ଜାଣିବାରେ ଶ୍ରୀଧର ବାବୁ ଲୋଭ-ମୋହ-ବିବର୍ଜିତ ଜଣେ ସନ୍ଥ ସନ୍ୟାସୀ ନ ଥିଲେ । ସେ ଥିଲେ ଆମ ସମସ୍ତଙ୍କ ପରି ଜଣେ ସାଧାରଣ ବ୍ୟକ୍ତି । କିନ୍ତୁ ଶ୍ରୀଧର ବାବୁଙ୍କ ଅସାଧାରଣ ବୈଶିଷ୍ଟ୍ୟ ହେଉଛି ତାଙ୍କର କର୍ମନିଷ୍ଠା । ସେ ଥିଲେ ଜଣେ ନିରଳସ କର୍ମଯୋଗୀ । ତାଙ୍କର ସନ୍ତାନ ସନ୍ତତି ସମାଜର ଅତି ଉଚ୍ଚସ୍ତରରେ ଅଧିଷ୍ଠିତ । ଅବସର ଗ୍ରହଣ କଲାପରେ, ଇଚ୍ଛା କରିଥିଲେ ସେ ସ୍ୱୋପାର୍ଜିତ ଧନରେ ସୁଦ୍ଧା ଭୋଗ ବିଳାସ ପୂର୍ଣ୍ଣ ପ୍ରାଚୁର୍ଯ୍ୟ ମଧ୍ୟରେ ଅୟସ-ଆରାମ ଦାୟକ ଏକ ବିଶ୍ରାନ୍ତ ଜୀବନ ଅତିବାହିତ କରି ପାରିଥାନ୍ତେ । କିନ୍ତୁ 'ଆରାମ ହାରାମ ହୈ' ନୀତି ଅବଲମ୍ବନ କରି ସେ ବାଛି ନେଇଥିଲେ ଏକ କର୍ମମୁଖର ସରଳ ନିରାଡ଼ମ୍ବର ଜୀବନ । ତାଙ୍କ ପାଇଁ ଥିଲା କର୍ମ ହିଁ ଜୀବନ, କର୍ମ ହିଁ ଆରାଧନା, କର୍ମ ହିଁ ଈଶ୍ୱର ପ୍ରାପ୍ତିର ସାଧନ ଏବଂ କର୍ମ ହିଁ ମୁକ୍ତିପଥଯାତ୍ରୀର ବାହନ । ଏପରି ଏକ ଅନନ୍ୟସାଧାରଣ ବ୍ୟକ୍ତିତ୍ୱର ସାନ୍ନିଧ୍ୟ-ସାହଚର୍ଯ୍ୟ ଲାଭ ନିଶ୍ଚିତ ରୂପେ ମୋର ସୌଭାଗ୍ୟ । ●

# ନିରଳସ ସାଧକ : ଅଧ୍ୟାପକ ଶ୍ରୀଧର ଦାସ

ପ୍ରଫେସର କୃଷ୍ଣଚରଣ ସାହୁ

ଶ୍ରମ ଓ ସାଧନାର ପ୍ରତୀକ ଅଧ୍ୟାପକ ଶ୍ରୀଧର ଦାସଙ୍କ ସହିତ ମୋର ପରିଚୟ ଅତି ସାମାନ୍ୟ । ସେ ଯେତେବେଳେ ୧୯୪୩ ମସିହାରେ ହରିହରପୁର ଏକାଡ଼େମୀ, ଜଗତସିଂହପୁରରେ ହେଡ଼ମାଷ୍ଟର ହୋଇ ଯୋଗଦାନ କଲେ ସେହି ସମୟରେ ମୁଁ ହରିହରପୁର ଏକାଡ଼େମୀରୁ ଟି.ସି. ନେଇ ପ୍ୟାରୀମୋହନ ଏକାଡ଼େମୀରେ ନାମ ଲେଖାଇବା ପାଇଁ ଚାଲି ଆସିଲି । ବୋଧହୁଏ ଟି.ସି. କାଗଜରେ ଦସ୍ତଖତ କରିବା ପାଇଁ ମୁଁ ଗଲି ତାଙ୍କ ବସାକୁ । ସେତେବେଳେ ସେ କେନାଲ କୂଳରେ ଗୋଟିଏ ବସାଘରେ ରହୁଥିଲେ । ଜଗତ୍‌ସିଂପୁରକୁ ଆସିବା ଅଳ୍ପଦିନ ହୋଇଥାଏ । ତେଣୁ ତାଙ୍କୁ ଦେଖିବାର ସୌଭାଗ୍ୟ ମୋର ପୂର୍ବରୁ ହୋଇ ନଥିଲା । କିନ୍ତୁ ସେତେବେଳକୁ ଛାତ୍ର ମହଲରେ ଶ୍ରୀଧର ବାବୁଙ୍କର ନାଁ ଥିଲା । ସେଥିପାଇଁ ମୋ ମନରେ କ୍ଷଣକ ପାଇଁ ଜଗତ୍‌ସିଂପୁରରେ ରହିଯିବାର ଇଚ୍ଛା ହେଉଥିଲା । କିନ୍ତୁ ମ୍ୟାଲେରିଆ ଜ୍ୱର ଡରରେ ସେ ଇଚ୍ଛାକୁ ଦମନ କରି ମୁଁ କଟକ ଆସିଲି । କିନ୍ତୁ ସେ ଦିନର ସେହି ଖଦଡ଼ ପିନ୍ଧା ଶ୍ରୀଧର ବାବୁଙ୍କୁ ଯେ ଦେଖିଥିଲି, ପରବର୍ତ୍ତୀ ଜୀବନରେ ବହୁବାର ସେହି ଭବରେ ତାଙ୍କୁ ଦେଖିବାର ସୁଯୋଗ ମିଳିଥିଲା ।

ବିହାର ବିଶ୍ୱବିଦ୍ୟାଳୟ, ଗଞ୍ଜ କଲେଜରେ ଅଧ୍ୟାପକ ଭବରେ ଯୋଗଦେବା ପରେ ଅଧ୍ୟାପକ ଆର୍ତ୍ତବଲ୍ଲଭ ଓ ଅଧ୍ୟାପକ ଶ୍ରୀଧର ଦାସ କିଛିଦିନ ପାଇଁ ବିହାର ବିଶ୍ୱବିଦ୍ୟାଳୟର ଓଡ଼ିଆ ବୋର୍ଡରେ ମେମ୍ବର ଥିଲେ । ସେତେବେଳେ ତାଙ୍କ ସହିତ ସାକ୍ଷାତ ହୁଏ ପାଟଣାରେ । ତାପରେ

ଗଞ୍ଜ ବିଶ୍ୱବିଦ୍ୟାଳୟର ତଥା ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରଶ୍ନକର୍ତ୍ତା ଭାବେ ତାଙ୍କ ସହ ମୋର ବହୁଥର ସାକ୍ଷାତ ହୋଇଛି ଅଧ୍ୟାପକ ଆର୍ତ୍ତବଲ୍ଲଭଙ୍କ ଘରେ ଏବଂ ତାଙ୍କ ନିଜ ଘରେ । ସେ ମୋଠାରୁ ବୟସରେ ବହୁତ ବଡ଼ ଓ ଅଧ୍ୟାପକ ଭାବରେ ବରିଷ୍ଠ ତଥାପି ପ୍ରଶ୍ନ ନିର୍ବାଚନ ବୋର୍ଡରେ ସେ ମୋତେ କୌଣସି ସୁବିଧା ନଦେଇ ନିଜେ ସବୁ କରି ନିଅନ୍ତି । ତାଙ୍କର ଅମାୟିକ ବ୍ୟବହାର ସବୁବେଳେ ମୋତେ ମୁଗ୍ଧ କରିଥିଲା ଏବଂ ମୁଁ ତାଙ୍କୁ ଶିକ୍ଷକ ଭାବେ ସବୁଦିନେ ସମ୍ମାନ ଦେଉଥିଲି ।

ଶ୍ରୀଧର ବାବୁ ତାଙ୍କର ସର୍ବସାର ବ୍ୟାକରଣ ପାଇଁ ଓଡ଼ିଶାର ସମସ୍ତ ସ୍କୁଲ କଲେଜର ଛାତ୍ର ଶିକ୍ଷକ ତଥା ଅଭିଭାବକ ମହଲରେ ସୁପରିଚିତ । ଏହା ବ୍ୟତୀତ 'ନବ ବିଧାନ' ଓ 'ବିବିଧ କୋଷ' ପାଇଁ ମଧ୍ୟ ସେ ପ୍ରସିଦ୍ଧ । କିନ୍ତୁ ସେ ଯେ ଛୋଟ ବଡ଼ ୧୨୦ ଟି ଗ୍ରନ୍ଥ ଲେଖିଥିଲେ ଏବଂ ସେସବୁ ସ୍କୁଲଠାରୁ ଆରମ୍ଭ କରି କଲେଜ ପର୍ଯ୍ୟନ୍ତ ଏପରିକି ସାଧାରଣ ପାଠକଙ୍କ ପାଇଁ ଉଦ୍ଦିଷ୍ଟ ଥିଲା ଏକଥା ଜାଣିବା ସହଜ ନଥିଲା । ତାଙ୍କର ଗ୍ରନ୍ଥସବୁକୁ ଅବଲୋକନ କଲେ ତାଙ୍କ ବିଦ୍ୱତ୍ତାର ପରିଚୟ ମିଳିଥାଏ । ବିଶ୍ୱବିଦ୍ୟାଳୟର ପାଠ୍ୟ ପୁସ୍ତକ ଭାବରେ ସ୍ୱୀକୃତ ହୋଇଥିବା ରର୍ତ୍ତୁଣୀ ବିଭା, ଚିଲିକା, ଦରବାର, ଚନ୍ଦ୍ରଭଗା, ମଥୁରାମଙ୍ଗଳ, ରସକଲ୍ଲୋଳ ଓ ବିଦଗ୍ଧ ଚିନ୍ତାମଣିକୁ ସମ୍ପାଦନା କରି ସେ ଛାତ୍ର ଓ ଅଧ୍ୟାପକମାନଙ୍କର ଅଭାବ ପୂରଣ କରିବାରେ ଯେ ସାହାଯ୍ୟ କରିଥିଲେ ତା' ନୁହେଁ, ତାଙ୍କ ସହକର୍ମୀ ଭାବେ କାର୍ଯ୍ୟ କରୁଥିବା ଅଧ୍ୟାପକମାନଙ୍କୁ ଏପରି ଗ୍ରନ୍ଥ ରଚନା ପାଇଁ ପ୍ରୋତ୍ସାହନ ଦେଇଥିଲେ । ଫଳରେ ଅଧ୍ୟାପକମାନଙ୍କ ମଧ୍ୟରୁ ଗୌରୀକୁମାର ବ୍ରହ୍ମା, ଘଠାଣି ପଟ୍ଟନାୟକ, ଦେବେନ୍ଦ୍ର ମହାନ୍ତି ପ୍ରମୁଖ ଅଧ୍ୟାପକ ବିଭିନ୍ନ ପାଠ୍ୟ ପୁସ୍ତକର ସମ୍ପାଦନା ଏବଂ ମୁଖବନ୍ଧ ଲେଖି ପ୍ରସିଦ୍ଧିଲାଭ କରିଥିଲେ । ଓଡ଼ିଶାର ଅନ୍ୟାନ୍ୟ କଲେଜମାନଙ୍କରେ ଏପରି ସାମୂହିକ ପ୍ରୟନ୍ତ ଦେଖିବାକୁ ମିଳେ ନାହିଁ । ଅନୁବାଦ କ୍ଷେତ୍ରରେ ମଧ୍ୟ ସେ ଅତ୍ୟନ୍ତ ଯଶସ୍ୱୀ ଥିଲେ । ଇଂରାଜୀ ଓ ସଂସ୍କୃତ ସାହିତ୍ୟର ପ୍ରସିଦ୍ଧ ଗ୍ରନ୍ଥ ସବୁ ଅନୁବାଦ କରି ସେ ଓଡ଼ିଆ ସାହିତ୍ୟର ଅନୁବାଦ ବିଭାଗକୁ ପରିପୁଷ୍ଟ କରିଛନ୍ତି । ସେ ରାମାୟଣ, ମହାଭାରତ, ବୌଦ୍ଧଜାତକ, ମିତ୍ରଲାଭ, ପଞ୍ଚତନ୍ତ୍ର, ମିତ୍ରପ୍ରାପ୍ତି, ମାଳବିକାଗ୍ନି ମିତ୍ର, ବେତାଳ ପଞ୍ଚବିଂଶତି, ଅଭିଜ୍ଞାନ ଶାକୁନ୍ତଳମ୍

ମୃଚ୍ଛକଟିକ ଓ ମୁଦ୍ରାରକ୍ଷସ ପ୍ରଭୃତି ସଂସ୍କୃତ ସାହିତ୍ୟର ଲୋକପ୍ରିୟ ଅମର ଗ୍ରନ୍ଥଗୁଡ଼ିକୁ ସରଳ ଭାଷାରେ ଓ ସଂକ୍ଷିପ୍ତ ରୂପରେ ଓଡ଼ିଆ ପାଠକଙ୍କ ନିକଟରେ ଉପସ୍ଥାପନ କରି ଯେପରି ସୁନାମ ଅର୍ଜନ କରିଥିଲେ ସେହିପରି ଗଲିଭରଙ୍କ ଭ୍ରମଣ କାହାଣୀ, ଅଲିଭର ଟୁଇଷ୍ଟ, ଲିଓ ଟଲଷ୍ଟୟଙ୍କ ଗଳ୍ପମାଳା, ରବିନ୍ ହୁଡ୍, ଗର୍କି, ହୋମର, ଓ ମୋପାଁସାଙ୍କ କାହାଣୀକୁ ଓଡ଼ିଆରେ ପ୍ରକାଶ କରି ଓଡ଼ିଆ ସାହିତ୍ୟର ଅଭାବ ପୂରଣ କରିଥିଲେ । ତାଙ୍କର ଅନୁବାଦ ସାହିତ୍ୟ ଉପରେ ଦୃଷ୍ଟିପାତ କଲେ ଜଣାଯାଏ ଯେ ସେ କାହାଣୀ ଉପରେ ହିଁ ବିଶେଷ ଗୁରୁତ୍ୱ ଦେଇଥିଲେ ଏବଂ ତାଙ୍କଦ୍ୱାରା ଅନୂଦିତ ଗ୍ରନ୍ଥ ସବୁ ମଧ୍ୟରୁ ଅଧିକାଂଶ ସେଥିପାଇଁ 'କାହାଣୀ' ନାମରେ ନାମିତ ।

ଅଧ୍ୟାପକ ଶ୍ରୀଧର ଦାସଙ୍କ ଅନୁବାଦ କରିବାର ସୀମା ଏତିକିରେ ସୀମାବଦ୍ଧ ନଥିଲା । ସାହିତ୍ୟ ବ୍ୟତୀତ ସେ ୟୁ.ଏସ୍.ଏ— ଇନ୍‌ଫରମେସନ୍ ଆନୁକୂଲ୍ୟରେ ବହୁଗ୍ରନ୍ଥ ଅନୁବାଦ କରିଥିଲେ— ସେଥିରେ ଥିଲା ଇତିହାସ, ଉଦ୍ଭିଦ ବିଜ୍ଞାନ, ପ୍ରାଣୀ ବିଜ୍ଞାନ ଏବଂ ରାଜନୀତି ବିଜ୍ଞାନର ବହୁ ଗ୍ରନ୍ଥ ।

ସ୍କୁଲ ପିଲାଙ୍କ ପାଇଁ ସେ ବହୁ ପାଠ୍ୟ ପୁସ୍ତକ ରଚନା କରିଥିଲେ । ସମୟ ଥିଲା ସେ ପାଠ୍ୟ ପୁସ୍ତକ ପ୍ରଣେତା ଭାବେ ଓଡ଼ିଆ ସାହିତ୍ୟରେ ଅଗ୍ରଗଣ୍ୟ ଥିଲେ । କେବଳ ସାହିତ୍ୟ ଗ୍ରନ୍ଥ ବ୍ୟତୀତ ଇତିହାସ ଓ ଭୂଗୋଳ ପ୍ରଭୃତି ଗ୍ରନ୍ଥ ମଧ୍ୟ ସେ ଲେଖିଥିଲେ ।

ବ୍ୟାକରଣ ରଚନାରେ ସେ ଥିଲେ ଓଡ଼ିଶାରେ ଅଦ୍ୱିତୀୟ । ବିଭିନ୍ନ ଶ୍ରେଣୀର ପାଠ୍ୟ ଭାବରେ ସେ ପ୍ରାୟ ଦଶ ଖଣ୍ଡ ବ୍ୟାକରଣ ଗ୍ରନ୍ଥ ଲେଖିଥିଲେ । ସେଥି ମଧ୍ୟରୁ ସର୍ବସାର ବ୍ୟାକରଣ ଅପ୍ରତିଦ୍ୱନ୍ଦୀ ଗ୍ରନ୍ଥଭାବରେ ଆଜି ମଧ୍ୟ ପ୍ରସିଦ୍ଧ ।

ସେ କେତେକ ଜୀବନୀ ଲେଖି ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଥିଲେ । ଓଡ଼ିଆ ସାହିତ୍ୟର ସାହିତ୍ୟିକମାନଙ୍କ ମଧ୍ୟରୁ ଗଙ୍ଗାଧର ମେହେର, ନନ୍ଦକିଶୋର ବଳ, କବିସୂର୍ଯ୍ୟ ବଳଦେବ ରଥ ଓ ସାଧୁ ସୁନ୍ଦର ଦାସଙ୍କର ଜୀବନୀ ଲେଖି ସେ ଯେ ଓଡ଼ିଆ ସାହିତ୍ୟକୁ ଋଦ୍ଧିମନ୍ତ କରିଛନ୍ତି ତାହା ନୁହେଁ । ନିଜର ଜୀବନୀ "ସୁଅ ମୁହଁରେ ପତର" ଲେଖି ମଧ୍ୟ ସେ

ପ୍ରସିଦ୍ଧି ଲାଭ କରିଛନ୍ତି । ଅଶୀ ବର୍ଷ ବୟସରେ ସେ ନିଜର ଜୀବନୀ ରଚନା କରିଥିଲେ । ସେଥିପାଇଁ ଏହି ଗ୍ରନ୍ଥରେ ଭାଷାର ସରସତା ପ୍ରାୟ ଦେଖିବାକୁ ମିଳୁନଥିଲେ ହେଁ ଏହା ଯେ ତାଙ୍କର ଘଟଣାବହୁଳ ଜୀବନର ଏକ ମୂଲ୍ୟବାନ ଇତିହାସ ଏକଥା ଅସ୍ୱୀକାର କରି ହେବ ନାହିଁ । ତାଙ୍କ ଜୀବନରେ ସେ ବହୁ ଲୋକଙ୍କ ସଂସ୍ପର୍ଶରେ ଆସିଥିଲେ । ସେମାନଙ୍କ ମଧ୍ୟରୁ କେତେକ ଉପକାରୀ ମିତ୍ର, ପୁଣି କେତେକ ଅପକାରୀ ଶତ୍ରୁ । କିନ୍ତୁ ସବୁଠାରୁ ବିଚିତ୍ର ଲୋକ ସେହିମାନେ, ଯେଉଁମାନେ ମିତ୍ରତାର ଦ୍ୱାହି ଦେଇ ଶ୍ରୀଧର ବାବୁଙ୍କର ସରଳତାର ସୁଯୋଗ ନେଇଛନ୍ତି । ଏପରି ତଥାକଥିତ ବନ୍ଧୁମାନଙ୍କ ସଂପର୍କରେ ମନ୍ତବ୍ୟ ଦେଲାବେଳେ ଶ୍ରୀଧର ବାବୁଙ୍କ ଭାବ ପ୍ରକାଶର ଶକ୍ତି ବହୁଗୁଣିତ ହୋଇଯାଏ । ଏହିପରି ଜଣେ ଲୋକ ହେଉଛନ୍ତି ଜଗତ୍‌ସିଂହପୁରର ଭଦ୍ରବ୍ୟକ୍ତି ଭଗତ ଚରଣ ମହାନ୍ତି । ଜଗତ୍‌ସିଂହପୁରରେ ଥିଲାବେଳେ ସେ ଭାଗୁବାବୁଙ୍କଠାରୁ ଜମି ଖଣ୍ଡେ ପାଇଥିଲେ । ସେ ମହନ୍ତଙ୍କଠାରୁ ଦୁଇଶହ ଟଙ୍କା ଦେଇ ଦଶଗୁଣ୍ଠ ଜମି ପଟ୍ଟା କରିଥିଲେ । ସେହି ଜମିକୁ ଶ୍ରୀଧରବାବୁ ଭଗତବାବୁଙ୍କୁ ବିକ୍ରୀ କଲେ । ଦଲିଲ ରେଜିଷ୍ଟ୍ରି ହୋଇଯିବା ପରେ କିନ୍ତୁ ଶ୍ରୀଧର ବାବୁଙ୍କୁ କିଭଳି ଅବସ୍ଥା ଭୋଗ କରିବାକୁ ହୋଇଥିଲା ତାହା ସେ ଆତ୍ମ ଜୀବନୀରେ ଉଲ୍ଲେଖ କରିଛନ୍ତି । ସେ ଲେଖିଛନ୍ତି 'ସେ ମୋ ହାତକୁ ବସ୍ ଟିକଟ ଖଣ୍ଡି ବଢ଼ାଇ ଦେଇ କହିଲେ 'ମୋର ଟିକିଏ କାମ ଅଛି । ସେ କାମ ସରିଗଲେ କଟକ ଯାଇ ଟଙ୍କା ଦେଇ ଆସିବି । କିନ୍ତୁ ତାଙ୍କ ସହିତ ଆଉ ଭେଟ ମିଳିଲା ନାହିଁ । ସେ ଏବେ ସ୍ୱର୍ଗପୁରରେ, ଏ ବିଷୟରେ ମନ୍ତବ୍ୟ ଦେଇ ଶ୍ରୀଧର ବାବୁ କହନ୍ତି, "ସେ ଜଣେ ବିଶିଷ୍ଟ ଧନୀ ବ୍ୟକ୍ତି । ତାଙ୍କ ଭାଇ ନୃସିଂହ ଚରଣ ମହାନ୍ତି ବାରିଷ୍ଟରି ପାସ୍ କରିଥିଲେ, ତାଙ୍କ ପୁଅ ମୋର ଛାତ୍ର ଥିଲା । ତାର ସ୍ୱଭାବ ମଧ୍ୟ ଅତି ଉତ୍ତମ । ଭଗତ ବାବୁଙ୍କ ସହ ଦୀର୍ଘ ଦୀନ ଧରି ମୋର ସୌହାର୍ଦ୍ଦ୍ୟ ଥିଲା । ତାଙ୍କୁ ବିଶ୍ୱାସ କରି ମୁଁ ଏହି ବ୍ୟବହାର ପାଇଥିଲି । ଏବେ ଜଣେ କହୁଥିଲେ ସେ ଜମିର ମୂଲ୍ୟ ଲକ୍ଷାଧିକ ଟଙ୍କା ହେବ । ତାଙ୍କର ପୁଅମାନେ କେଉଁଠି ତା' ଉପରେ ପ୍ରକାଣ୍ଡ କୋଠାଘର ତୋଳି ଅଛନ୍ତି ।"

ଶ୍ରୀଧର ବାବୁ କେବଳ ଜଣେ ଭଗତ ମାହାନ୍ତିଙ୍କଠାରୁ ନୁହେଁ, ତାଙ୍କ ଜୀବନରେ ବହୁ ଭଗତ ମାହାନ୍ତିଙ୍କ ଦ୍ୱାରା ପ୍ରବଞ୍ଚିତ ହୋଇଛନ୍ତି । ଶ୍ରୀଧର

ବାବୁଙ୍କ ଜୀବନୀ ପାଠ କଲାବେଳେ ପ୍ରତ୍ୟେକ ପାଠକ ନିଶ୍ଚିତ ଭାବରେ ଅନୁଭବ କରିଥିବେ ଯେ ଏହା କେବଳ ଶ୍ରୀଧର ବାବୁଙ୍କର ଜୀବନର କଥା ନୁହେଁ, ଏହା ହେଉଛି ସାର୍ବଜନୀନ ସତ୍ୟ । ସମସ୍ତଙ୍କ ଜୀବନରେ ଏମିତି ବହୁ ଲୋକ ମିଳିବେ, ଯେଉଁମାନେ ମୁହଁରେ ମିଠା କହି ପଛରେ ଛୁରୀ ଚଳାନ୍ତି । ଶ୍ରୀଧର ବାବୁ ତାଙ୍କ ପରିବାର ବର୍ଗଙ୍କ ସମ୍ପର୍କରେ ଯାହା ଲେଖିଛନ୍ତି ତାହା ହିଁ ହେଉଛି ଓଡ଼ିଶାର ସାଧାରଣ ଜୀବନ, ଜଣେ ଶିକ୍ଷିତ ହୋଇ ଚାକିରୀ ଖଣ୍ଡେ କଲା ପରେ ଘରେ ଥିବା ଲୋକ ଭାବନ୍ତି, ସେ ସ୍ୱର୍ଗରେ ଅଛି । ସେଥିପାଇଁ ସେମାନେ ସବୁବେଳେ ତାକୁ ଲୁଣ୍ଠନ କରିବାରେ ଲାଗି ପଡ଼ନ୍ତି ବିଭିନ୍ନ ପ୍ରକାର ଆଳ ଦେଖାଇ । କେତେବେଳେ ମା'ର ଶ୍ରାଦ୍ଧଘର, ପୁଅର ପାଠପଢ଼ା, ଝିଅର ବାହାଘର ତ କେତେବେଳେ ଏ ବର୍ଷ ଫସଲ ସବୁ ଅନାବୃଷ୍ଟିରେ ନଷ୍ଟ ହୋଇଗଲା । ଯେତେଦିନ ପର୍ଯ୍ୟନ୍ତ ତୁମେ ଏହି ସବୁ ଟଙ୍କା ଦେଇ ଚାଲିଥିବ, ସେମାନେ ତୁମକୁ ମିଠା କଥା କହୁଥିବେ । ଟଙ୍କା ଦେବା ବନ୍ଦ କରିଦେଲେ ସେମାନେ ହେବେ ତୁମର ପରମ ଶତ୍ରୁ ।

ଶ୍ରୀଧର ବାବୁଙ୍କ ଜୀବନୀ ଜଣେ ସାଧାରଣ ଶିକ୍ଷକର ଦୁର୍ଦ୍ଦଶାର କାହାଣୀ । ସେ ଜୀବନରେ ଯେତେ ଘାତ ପ୍ରତିଘାତ ସହ୍ୟ କରିଥିଲେ ଏବଂ ସେ ସବୁକୁ ଅତିକ୍ରମ କରି ଶେଷରେ ଖ୍ରୀଷ୍ଟ କଲେଜର ଜଣେ ବରେଣ୍ୟ ଅଧ୍ୟାପକ ଭାବେ ସମ୍ମାନିତ ହୋଇଥିଲେ ଏହି କଥା କହିଲା ବେଳେ ସେ କେବଳ ନିଜ କଥା ନକହି ତାଙ୍କ ସମକାଳୀନ ବହୁ ଶିକ୍ଷକଙ୍କ ଦୁର୍ଦ୍ଦଶା କଥା କହିଛନ୍ତି । ଓଡ଼ିଶାରେ ଥିବା ବିଭିନ୍ନ ହାଇସ୍କୁଲର ବିଭିନ୍ନ ସେକ୍ରେଟାରୀ ଏବଂ ସାଙ୍ଗ ଶିକ୍ଷକଙ୍କ ମନୋଭାବ ଏଥିରେ ଅତି ସ୍ପଷ୍ଟ । ଏଥିରେ ହିଁ ଶ୍ରୀଧର ବାବୁ ବଞ୍ଚି ମଣିଷ ହୋଇଥିଲେ । ପ୍ରଗାଢ଼ ସାଧନାର ପ୍ରତୀକ ଋଷିପ୍ରତିମ ଶ୍ରୀଧର ବାବୁଙ୍କ ଜୀବନୀ ପାଠ କଲାବେଳେ ନିଜ ଜୀବନର ବହୁ ଅକୁହା କଥା ଆପେ ଆପେ କହି ହୋଇଯାଏ, ଏହାହିଁ ତାଙ୍କ ଜୀବନର ସାର୍ଥକତା ।

●

# ଏକ କର୍ମମୟ ସଫଳ ଜୀବନ

ଅଧ୍ୟାପକ ବନମାଳୀ ମିଶ୍ର

ମଣିଷର ଜୀବନ ସ୍ରୋତ କାଳର ଗତିରେ ଅବିରାମ ଚାଲିଥାଏ । ସେହି ସ୍ରୋତରେ କିଏ ମଣିଷକୁ ସାହାଯ୍ୟ କରେ, କିଏ ବା ଗୋଡ଼ ଝିଙ୍କି-ଦିଏ । ମଣିଷର ସବୁ କଥା ମନେ ରହେନା । ଅତୀତକୁ ମଣିଷ ଭୁଲିଯାଏ । ତଥାପି ଜୀବନ ସ୍ରୋତରେ କେତେକ ମାଇଲ ଖୁଣ୍ଟ ଦାଗ ରଖିଯାଏ । ତାହା ଭୁଲି ହୁଏନା ।

୧୯୫୩ ମସିହା ଅଗଷ୍ଟ ୮ ତାରିଖ । ସ୍ୱର୍ଗତ ବନ୍ଧୁ ଅଟଳ ପଟ୍ଟନାୟକଙ୍କ ସହିତ ରିକ୍ସାରେ କଟକ ଚଣ୍ଡୀ ଛକରେ ଯାଉଥାଏ । ପଛରୁ ଡାକ ଶୁଣିଲି, ବନମାଳୀ, ବନମାଳୀ—ପରିଚିତ ଡାକ । ରିକ୍ସା ଅଟକିଲା । ପଛକୁ ଚାହିଁଲି । ସାଇକେଲ ଧରି ଛିଡ଼ା ହୋଇଛନ୍ତି, ଅଧ୍ୟାପକ ଶ୍ରୀଧର ଦାସ । ସଙ୍ଗେ ସଙ୍ଗେ ଯାଇ ବନ୍ଧୁ ଅଟଳ ଓ ମୁଁ ସାର୍‌ଙ୍କୁ ପ୍ରଣାମ କଲୁ । 'ସାର୍' କହିଲେ, ଆମ କଲେଜରେ ୨ଟି ଅଧ୍ୟାପକ ପଦ ଖାଲି ଅଛି । ତୁମେ ଦରଖାସ୍ତ କର । ମୁଁ ବିଶ୍ୱବିଦ୍ୟାଳୟରୁ ଦେଖି ଆସିଚି, ତୁମେ ଏମ୍.ଏ.ରେ ଦ୍ୱିତୀୟ ସ୍ଥାନ ପାଇଚ । ତେଣୁ ଦରଖାସ୍ତ କଲେ, ତୁମର ହୋଇଯିବ ।'

ମୁଁ ଆଶ୍ଚର୍ଯ୍ୟ ହେଲି । ସାତ ଦିନ ହେଲା ଯଦିଓ ପରୀକ୍ଷା ଫଳ ବାହାରିଲାଣି ମୁଁ ମୋର ପରୀକ୍ଷାରେ ପାଇଥିବା ନମ୍ବର ଜାଣିନି—କେବଳ ଦ୍ୱିତୀୟ ଶ୍ରେଣୀରେ ପାଶ୍ କରିଥିବା ଖବର ଜାଣିଚି । ପଚାରିଲି, ଦରଖାସ୍ତର ଶେଷ ତାରିଖ କେବେ ?' ସାର୍ କହିଲେ, 'କାଲି ହେଉଚି ଦରଖାସ୍ତର ଶେଷ ତାରିଖ । ବର୍ତ୍ତମାନ ଦରଖାସ୍ତ କରି ଦେଇ ଆସ ।'

ମୁଁ କଲେଜକୁ ଯାଇ ସେହିଦିନ ଦରଖାସ୍ତ କରି ଦେଇ ଆସିଲି । ତା'ର ଦୁଇ ଦିନ ପରେ ସାକ୍ଷାତ୍ କରିବା ପାଇଁ ଡାକରା । ସାକ୍ଷାତ୍

ପରେ ପରେ ସେହିଦିନ ଖ୍ରୀଷ୍ଟ ମହାବିଦ୍ୟାଳୟରେ ଅଧ୍ୟାପକ ଭବେ ଯୋଗଦେଲି ।

ତିନି ଗ୍ରରି ମାସ ଗଲା । ଅଧ୍ୟାପକ ଶ୍ରୀଧର ଦାସ ଡଗରପଡ଼ାର ଅନାଥାଶ୍ରମର ଭଡ଼ା ଘରେ ରହୁଥିଲେ । ସେଥିରେ ୨ଟି କ୍ୱାଟର ଥିଲା । ଗୋଟିଏ ପଟେ ସେ ରହୁଥିଲେ । ଅନ୍ୟପଟେ ଘରଟି ଖାଲି ହେବା ମାତ୍ରେ ମୋ ପାଇଁ ରଖିଲେ । ତପରେ 'ସାର୍'ଙ୍କର ପଡ଼ୋଶୀ ହୋଇ ରହିବାର ସୌଭଗ୍ୟ ମିଳିଲା ।

'ସାର୍' ୧୯୪୮ରେ ଖ୍ରୀଷ୍ଟ ମହାବିଦ୍ୟାଳୟରେ ଯୋଗ ଦେଇଥିଲେ । ମୁଁ ସେତେବେଳେ ସେହି କଲେଜର ତୃତୀୟ ବାର୍ଷିକ କଳା ଶ୍ରେଣୀରେ ପଢୁଥାଏ । ସାଧାରଣତଃ ହାଇସ୍କୁଲ ପରି କଲେଜରେ ଶିକ୍ଷକ-ଛାତ୍ର ନିକଟ ସଂପର୍କ ରହେ ନା । କିନ୍ତୁ ଅଧ୍ୟାପକ ଦାସଙ୍କ ସମ୍ପର୍କରେ ତାହା କୁହାଯାଇ ପାରିବ ନାହିଁ । ହୁଏତ ବହୁଦିନ ଧରି ହାଇସ୍କୁଲରେ ପ୍ରଧାନ ଶିକ୍ଷକ ହୋଇ ଆସିଛନ୍ତି । ତେଣୁ କଲେଜକୁ ଆସିବା ପରେ ମଧ୍ୟ ଅଭ୍ୟାସଟା ସେ ଛାଡ଼ି ପାରୁ ନଥିଲେ । ଛାତ୍ରମାନଙ୍କ ସହ ତାଙ୍କର ସଂପର୍କ ଅତି ସୌହାର୍ଦ୍ଦ୍ୟପୂର୍ଣ୍ଣ ଥିଲା । ସେ ଛାତ୍ର ମାନଙ୍କର ଭଲ ମନ୍ଦ, ସୁବିଧା ଅସୁବିଧା ବୁଝି ପାରୁଥିଲେ । ସେଥିଲାଗି ଛାତ୍ରମାନେ ତାଙ୍କୁ ଅତି ଶ୍ରଦ୍ଧା କରୁଥିଲେ, ସମ୍ମାନ ମଧ୍ୟ କରୁଥିଲେ ।

ଖ୍ରୀଷ୍ଟ ମହାବିଦ୍ୟାଳୟରେ କୋଡ଼ିଏ ବର୍ଷ ଧରି ସାର୍ ଓଡ଼ିଆ ବିଭଗର ମୁଖ୍ୟ ଅଧ୍ୟାପକ ଥିଲେ । ତାଙ୍କର ବେଶଭୂଷା ଥିଲା ଅତି ସାଧାରଣ, ବ୍ୟବହାର ମଧୁର, ସୌହାର୍ଦ୍ଦ୍ୟପୂର୍ଣ୍ଣ । ଉକ୍ତ ବିଭଗର ଅଧ୍ୟାପକ-ମାନେ ତାଙ୍କର କର୍ତ୍ତୃତ୍ୱ କେହି କେବେ ଅନୁଭବ କରିପାରୁ ନଥିଲେ । ଜ୍ଞାନ, ବୟସ ଓ ବ୍ୟବହାର ହେତୁ ସେ ସବୁ ଅଧ୍ୟାପକଙ୍କର ସମ୍ମାନ ତଥା ଶ୍ରଦ୍ଧାର ପାତ୍ର ହୋଇ ପାରିଥିଲେ । କଲେଜରେ ପାଠ ପଢ଼ାଇବା ସଙ୍ଗେ ସଙ୍ଗେ ଅଫିସର ବହୁ କାମ ତାଙ୍କରି ଉପରେ ନ୍ୟସ୍ତ ଥିଲା । କାରଣ, ମାଇନର ସ୍କୁଲ, ହାଇସ୍କୁଲରେ ଶିକ୍ଷକ, ହେଡ୍‌ମାଷ୍ଟର, ପୁଣି ବାମଣ୍ଡା ଶିକ୍ଷା ବିଭଗର କର୍ତ୍ତା ଥାଇ, ସେ ଶିକ୍ଷା ବିଭଗର ଅଫିସ କାର୍ଯ୍ୟରେ ବହୁ ଅଭିଜ୍ଞତା ଲଭ କରିଥିଲେ । ତେଣୁ ତତ୍କାଳୀନ କଲେଜ ପ୍ରିନ୍ସିପାଲ ସ୍ୱର୍ଗତ ରେଭରେଣ୍ଡ

ବ୍ରହ୍ମାନନ୍ଦ ମହାନ୍ତି ତାଙ୍କ ଉପରେ ଅଫିସ କାର୍ଯ୍ୟ ଲାଗି ବହୁ ଭାବରେ ନିର୍ଭର କରୁଥିଲେ ।

ସାର୍‌ଙ୍କ ପରି କର୍ମଠ, ଅଧ୍ୟବସାୟୀ ଓ କର୍ତ୍ତବ୍ୟପରାୟଣ ଖୁବ୍ ଅଳ୍ପ ଲୋକଙ୍କ ସଂପର୍କରେ ମୁଁ ଆସିଚି । କାମ ନକରି ସେ କେବେ ଚୁପ୍ ହୋଇ ବସି ପାରନ୍ତି ନାହିଁ । କଲେଜ ଗଲେ ଅଧ୍ୟାପନା ଓ ଅବସର ସମୟରେ ଅଫିସ କାମ । କଲେଜ ଛୁଟି ହେବା ପରେ ମଧ୍ୟ ବହୁ ସମୟ ଧରି ତାଙ୍କୁ ଅଫିସରେ ରହି କାମ କରିବାକୁ ପଡ଼ିଥାଏ । ତେଣୁ କଲେଜରେ 'Teachers' Common Room'ରେ ବସି ଗପ କରିବା ପାଇଁ ତାଙ୍କର ପ୍ରାୟ ସମୟ ନଥାଏ । ଘରକୁ ଆସିଲେ ଖାଇସାରି ପ୍ରାୟ ଅଧଘଣ୍ଟାଏ ବିଶ୍ରାମ । ତା' ପରେ ଲେଖା ପଢ଼ା କାମ ଚାଲେ, ଫଳରେ ଜୀବନ କାଳ ମଧ୍ୟରେ ସେ ୧୨୦ରୁ ଅଧିକ ପୁସ୍ତକର ପ୍ରଣେତା ହୋଇ ପାରିଥିଲେ । କଲେଜ ବା ଘରେ ତାଙ୍କର ଅବସର ନଥାଏ । ତେଣୁ କିଛି ଘର କାର୍ଯ୍ୟରେ ବ୍ୟସ୍ତଥିବା ଦେଖି ଅନେକ ସମୟରେ ମୁଁ ପରିହାସରେ କହେ, ସାର୍‌ଙ୍କର ପଢ଼ା, ଲେଖା କାମ ଆଜି ସମ୍ଭବତଃ କିଛି ନାହିଁ । ତେଣୁ ପିଲାଙ୍କର କାହାର କେତେ ପୋଷାକ ଅଛି ଆଜି ଗଣିବାରେ ଲାଗି ପଡ଼ିଛନ୍ତି । ସାର୍ ହସି କହନ୍ତି, 'ନାଇଁ ମ, ଏ ପିଲାଗୁଡ଼ାକ ଲୁଗାପଟା କିପରି ଫିଙ୍ଗିଛନ୍ତି, ଦେଖନ୍ତୁ– ମୁଁ ସେ ସବୁ ସଜାଡ଼ି ରଖୁଥିଲି ।"

ମୁଁ ତ 'ସାର୍'ଙ୍କ ପଡ଼ୋଶୀ ଭାବରେ ପ୍ରାୟ ତିନିବର୍ଷ ଥିଲି । ଆମ ଦୁହିଁଙ୍କର ଅଗଣା ଏକାଠି– ବାଡ଼ ନାହିଁ । ଘର ଭିତର ପିଣ୍ଡାରେ ଦୁଇଟି ଗେଷେଇ ଘର । ତେଣୁ ସାର୍‌ଙ୍କ ସହ ସମ୍ପର୍କ ମୋର ଅତି ନିବିଡ଼ ଥିଲା ।

ସାର୍ ଛୋଟ ପିଲାଙ୍କୁ ଭରି ସୁଖ ପାଉଥିଲେ । ପିଲାଙ୍କ ସହିତ ଖେଳି ବସୁଥିଲେ । ତାଙ୍କୁ ଧରି ବୁଲାଉ ଥିଲେ । କାମ ନଥିଲେ, ଛୁଟି ଦିନରେ ମୋର ପୁଅକୁ ତେଲ ଘଷିବେ । ମୁଁ ଓ ମୋ ଘରିଙ୍କା ଯେତେ ଆପତ୍ତି କଲେ ଶୁଣିବେ ନାହିଁ । ସେ ଏହିପରି ସରଳ ଓ ଦରଦୀ ଲୋକ ଥିଲେ । ତାଙ୍କର ସ୍ନେହ, ଶ୍ରଦ୍ଧା ଭୁଲିବାର ନୁହେଁ ।

'ସାର୍'ଙ୍କର ଜୀବନ ବୃତ୍ତାନ୍ତ ଅତି ବିଚିତ୍ର । କାହିଁ କାକଟପୁରର ଏକ ଅପାଂକ୍ତେୟ କ୍ଷୁଦ୍ର ପଲ୍ଲୀ ନଇଗୁଆଁରେ ତାଙ୍କର ଜନ୍ମ । ବାପା ଜଣେ ପ୍ରାଇମେରୀ ଶିକ୍ଷକ– ଜମି ବାଡ଼ି ପ୍ରାୟ କିଛି ନଥିଲା । ସେତେବେଳର ପ୍ରାଇମେରୀ ଶିକ୍ଷକଙ୍କ ଦରମା ବୋଇଲେ ଦୁଇଟଙ୍କା ବା ଚାରିଟଙ୍କା । ଫଳରେ 'ମାଇନର' କ୍ଳାସରୁ ପାଠରେ ଡୋରି ବନ୍ଧା ହେବାର କଥା । କିନ୍ତୁ ସାର୍‌ଙ୍କୁ ମାଇନର ବୃତ୍ତିଟିଏ ମିଳିଲା । ତେଣୁ ସେ ପୁରୀ ଜିଲ୍ଲା ସ୍କୁଲରେ କୌଣସିମତେ ପଢ଼ିପାରିଲେ । ସେ ପାଟନା ବିଶ୍ୱବିଦ୍ୟାଳୟରେ ଦ୍ୱିତୀୟ ସ୍ଥାନ ଅଧିକାର କଲେ, ବୃତ୍ତି ପାଇଲେ । ଅବସ୍ଥା ଚକ୍ରରେ ପଡ଼ି ସେତେବେଳର ବିହାର ଓ ଓଡ଼ିଶା ରାଜଧାନୀ ପାଟନା ଗଲେ । ଆଇ. ଏ: ପଢ଼ିଲେ, ଦାରିଦ୍ର୍ୟ କଷାଘାତରେ ସ୍ୱାସ୍ଥ୍ୟ ଭାଙ୍ଗି ପଡ଼ିଲା । ପରୀକ୍ଷା ବେଳକୁ ଜ୍ୱରକ୍ରାନ୍ତ ହେଲେ, ତଥାପି ଜ୍ୱରବସ୍ଥାରେ ପରୀକ୍ଷା ଦେଲେ । ୨ୟ ଶ୍ରେଣୀରେ ପାସ୍ କଲେ । ଆଉ ବୃତ୍ତି ମିଳିଲାନି । ପାଠପଢ଼ା ଇତିଶ୍ରୀ ହେଲା ।

ତା'ପରେ ଚାକିରୀ ଖୋଜି ବସିଲେ । ସେ କାଳରେ ସରକାରୀ ଚାକିରୀ ଅତି ନଗଣ୍ୟ । ପୁରୀ ଜିଲ୍ଲାରେ ସରକାରୀ ହାଇସ୍କୁଲ ବୋଇଲେ କେବଳ ପୁରୀ ଜିଲ୍ଲା ସ୍କୁଲ । ଏହାଛଡ଼ା ସମଗ୍ର ଜିଲ୍ଲାରେ ୨ଟି ବେସରକାରୀ ହାଇସ୍କୁଲ ଥିଲା । ମାଇନର ସ୍କୁଲ ସମଗ୍ର ଜିଲ୍ଲାରେ ୬ ବା ୭ଟି । ସୌଭାଗ୍ୟକୁ ଚନ୍ଦନପୁର ନିକଟସ୍ଥ ଏବର ଭାର୍ଗବୀ ହାଇସ୍କୁଲ ( ସେତେବେଳର ବିଶ୍ୱନାଥ ମି: ଇ: ସ୍କୁଲ )ର ହେଡ୍‌ମାଷ୍ଟର ଟ୍ରେନିଂ ପଢ଼ିବା ପାଇଁ ଛୁଟିରେ ଗଲେ । ତେଣୁ ନଅମାସ ପାଇଁ ହେଡ୍‌ମାଷ୍ଟର ଭାବେ ବିଶ୍ୱନାଥ ମି: ଇ: ସ୍କୁଲ୍‌ରେ ଯୋଗ ଦେଲେ । ଏହିପରି ବିଭିନ୍ନ ବିଦ୍ୟାଳୟରେ ଅସ୍ଥାୟୀ ଚାକିରୀରେ ରହିଲେ । ଏ ସ୍କୁଲ ଚାକିରୀ ଭିତରେ ବି. ଏ. ପାସ୍ କଲେ । ତା'ପରେ ସେତେବେଳର ଗଡ଼ଜାତ ବଡ଼ମ୍ବା ରାଜ୍ୟରେ ମି. ଇ. ସ୍କୁଲର ହେଡ୍‌ମାଷ୍ଟରରୁ, ହାଇସ୍କୁଲ ହେଡ୍‌ମାଷ୍ଟର ଓ ପରେ ଷ୍ଟେଟର ଶିକ୍ଷା ବିଭାଗର କର୍ତ୍ତା । ଏହିପରି ଭାବେ ୪ ବର୍ଷ ଅତିବାହିତ ହୁଏ । ସେ କାଳରେ ଏକାଙ୍ଗ ଚକ୍ରବର୍ତ୍ତୀ ସ୍ୱେଚ୍ଛାଚାରୀ ରାଜୁଡ଼ା ଶାସନରେ ରହିବା ସମସ୍ତଙ୍କ ପକ୍ଷରେ ସୁବିଧା ହେଉ ନଥିଲା । ତେଣୁ ବାଧ୍ୟ ହୋଇ ସେ ଇସ୍ତଫା ଦେଲେ । ବି. ଇଡ଼ି. ଟ୍ରେନିଂ ପାସ୍ କରି ଜଗତ୍‌ସିଂହପୁର, କୋରୁଆ ଉଚ୍ଚ ବିଦ୍ୟାଳୟରେ ହେଡ୍‌ମାଷ୍ଟର ହେଲେ । ୧୯୪୨ରେ ସେ ଓଡ଼ିଆରେ

ଏମ୍. ଏ. ପାସ୍ କଲେ । ରେଭେନ୍‌ସା କଲେଜରେ ୬ ମାସ ପାଇଁ ଅସ୍ଥାୟୀ ଚାକିରୀ ପାଇଥିଲେ । କିନ୍ତୁ ସ୍ଥାୟୀ ଚାକିରୀକୁ ଛାଡ଼ି ଅସ୍ଥାୟୀ ଚାକିରୀରେ ଯୋଗ ଦେଲେ ନାହିଁ । ୧୯୪୮ରେ କୋଲ୍ଡିଆଁ ହାଇସ୍କୁଲ ଛାଡ଼ି ଖ୍ରୀଷ୍ଟ ମହାବିଦ୍ୟାଳୟରେ ଅଧ୍ୟାପକ ଭାବେ ଯୋଗ ଦେଲେ । ସେହିଦିନ-ଠାରୁ 'ସାର୍'ଙ୍କ ସହିତ କାହିଁକି, ସାର୍‌ଙ୍କ ପରିବାର ସହିତ ମୋର ଘନିଷ୍ଠ ସମ୍ପର୍କ ରହି ଆସିଛି ।

ଶିକ୍ଷାୟତନରେ ସେ ଦୀର୍ଘ ଦିନ ଧରି ଚାକିରୀ କରିଥିଲେ । ୧୯୨୪ରେ ମାଇନର ସ୍କୁଲ ହେଡ୍‌ମାଷ୍ଟର ଭାବେ ଚାକିରୀ ଆରମ୍ଭ କଲେ । ସର୍ବ ଶେଷରେ ୧୯୬୮ ମସିହାରେ ଖ୍ରୀଷ୍ଟ ମହାବିଦ୍ୟାଳୟର ଓଡ଼ିଆ ବିଭାଗର ପ୍ରଧାନ ଅଧ୍ୟାପକ ପଦରୁ ଅବସର ଗ୍ରହଣ କଲେ । ଅବସର ନେଲେ ମଧ୍ୟ ତାଙ୍କର ପାଠ ପଢ଼ା ଓ ଲେଖାରେ ବିରାମ ନାହିଁ । ଅଶୀ ବର୍ଷ ବୟସରେ ତାଙ୍କ ଦୃଷ୍ଟିଶକ୍ତି କ୍ଷୀଣ ହୋଇ ଆସିଲା । ତଥାପି ତାଙ୍କର ଲେଖାରୁ ସେ ନିବୃତ୍ତ ହେଲେନି । ନିଜେ ତ ଲେଖି ପାରିଲେନି । ଅନ୍ୟକୁ ଡ଼ାକି ଲେଖି ବସିଲେ । ନିଜ ଆତ୍ମ ଜୀବନୀ 'ସୁଅ ମୁହଁରେ ପତର' । ସେହି ଆତ୍ମଜୀବନୀ ୧୯୮୨ରେ ପ୍ରକାଶ ପାଇଲା । ନିଜେ 'ପ୍ରୁଫ୍' ଦେଖି ନପାରିବାରୁ ସେଥିରେ ବହୁ ଭ୍ରମ ରହିଗଲା । ସେଥିପାଇଁ 'ସାର୍'ଙ୍କର କି କ୍ଷୋଭ ! ବହିଟିରେ ଏକ ଦୀର୍ଘ ସଂଶୋଧନୀ ଦିଆଗଲା । ତା'ପରେ ଯାଇ ବହିଟି ପ୍ରକାଶିତ ହେଲା ।

ଅଧ୍ୟାପକ ଦାସଙ୍କର ଜୀବନ ଏକ କର୍ମମୟ ସାଧକର ଜୀବନ । ଓଡ଼ିଶାର ଶିକ୍ଷିତ ମହଲରେ ଜଣେ ପ୍ରତିଷ୍ଠିତ ବୈୟାକରଣ ଭାବେ ସେ ସୁପ୍ରତିଷ୍ଠ । ପାଠ୍ୟ ପୁସ୍ତକ ଜାତୀୟକରଣ ହେବା ପୂର୍ବରୁ ସେ ଏକ ସହଯୋଗୀଙ୍କୁ ଘେନି ଯେଉଁ 'ଲଘୁ ବ୍ୟାକରଣ', 'ସର୍ବସାର ବ୍ୟାକରଣ' ରଚନା କରିଥିଲେ ତାହା ବହୁ ବର୍ଷ ଧରି ପ୍ରାଇମେରୀ ସ୍କୁଲଠାରୁ ହାଇସ୍କୁଲ ଯାଏ ସର୍ବତ୍ର ଆଦୃତ ହୋଇଥିଲା । ତାହାଛଡ଼ା ବହୁ ପାଠ୍ୟ ପୁସ୍ତକର ସେ ମଧ୍ୟ ପ୍ରଣେତା ଥିଲେ । ପିଲାଙ୍କ ପାଇଁ ସ୍ୱଦେଶ ଓ ଅନ୍ୟ ଦେଶର ବହୁ କାଳଜୟୀ ଗ୍ରନ୍ଥମାନଙ୍କର ସାର ସଂଗ୍ରହ କରି ବହୁ ପୁସ୍ତକ ମଧ୍ୟ ସେ ଲେଖି ଯାଇଛନ୍ତି । ଓଡ଼ିଆ ତଥା ଇଂରାଜୀରେ ଅଭିଧାନ ଗ୍ରନ୍ଥ ମଧ୍ୟ ଲେଖିଛନ୍ତି । ଏଥିରୁ ସ୍ପଷ୍ଟ ଜଣାଯାଏ, ସେ ଦୀର୍ଘ କର୍ମମୟ ଜୀବନ ମଧ୍ୟରେ ବାଣୀ–ସାଧନାକୁ ନିଜ ଜୀବନର ବ୍ରତ କରିଥିଲେ ।

ସମାଜର ବିଭିନ୍ନ କ୍ଷେତ୍ରରେ ସେ ପ୍ରତିଷ୍ଠିତ ହୋଇ ପାରିଥିଲେ । 'ଉତ୍କଳ ସାହିତ୍ୟ ସମାଜ' ଓ 'ଓଡ଼ିଶା ସାହିତ୍ୟ ଏକାଡ଼େମୀ' ଦ୍ୱାରା ସେ ପୁରସ୍କୃତ ହୋଇଥିଲେ । ତାଙ୍କର ଦୀର୍ଘ କର୍ମମୟ ଜୀବନରେ ଶୋଚନା କରିବାର କିଛି ନଥିଲା । ସାମାଜିକ ଓ ପାରିବାରିକ ଜୀବନରେ ସେ ସୁପ୍ରତିଷ୍ଠ ଥିଲେ । ତାଙ୍କର ମୃତ୍ୟୁ ହୁଏ ୮୮ ବର୍ଷ ବୟସରେ ୧୯୮୮ ଅପ୍ରେଲ ୨୪ ତାରିଖରେ । ବୟସ ଅତିକ୍ରାନ୍ତ ହୋଇଥିଲା । କର୍ମର ପରିସମାପ୍ତି ଘଟିଲା । କିନ୍ତୁ ଅଗଣିତ ଛାତ୍ର, ତଥା ବନ୍ଧୁଙ୍କର ଅବୁଝା ମନ ତାଙ୍କ ସ୍ମୃତି ଘେନି ଘାଣ୍ଟିହେବ— ଲୋତକ ବୋହି ପଡ଼ିବ— ଏହା ସ୍ୱାଭାବିକ । କର୍ମୀ ପୁରୁଷର ଏହାହିଁ ସଫଳ ଜୀବନ—ଯାତ୍ରା ।



# ଅଲିଭା ସ୍ମୃତି

ପ୍ରଫେସର ବଂଶୀଧର ମହାନ୍ତି

ଅଧ୍ୟାପକ ଶ୍ରୀଧର ଦାସଙ୍କୁ ଜଣେ ଆଦର୍ଶ ଶିକ୍ଷକ ଓ ଆଦର୍ଶ ଅଧ୍ୟାପକ ଭବରେ ମୁଁ ବହୁତ ଦିନରୁ ଜାଣେ । ମୁଁ ରେଭେନ୍‌ସା କଲେଜରେ ପଢିଲା ବେଳେ ସେ ଥିଲେ ମୋ ଗାଁ ହାଇସ୍କୁଲ ଶ୍ରୀକୃଷ୍ଣ ଏକାଡ଼େମୀର ହେଡ୍‌ମାଷ୍ଟର । ସେ ଜଗତ୍‌ସିଂହପୁର ବା ହରିହରପୁରରେ ୧୯୪୩ରୁ ୧୯୪୮ ପର୍ଯ୍ୟନ୍ତ ହେଡ୍‌ମାଷ୍ଟର ଥିବାବେଳେ ତାଙ୍କ ସହିତ ଥରେ ଦୁଇଥର ଦେଖା ହୋଇଥିଲା ଓ କଥାବାର୍ତ୍ତା ହୋଇଥିଲା । ସେଇ ଡେଙ୍ଗା ଚେହେରା ହସ ହସ ମୁହଁ ଓ ସ୍ନେହ ପୂର୍ଣ୍ଣ କଥାବାର୍ତ୍ତା ଏବେ ବି ମନେ ପଡୁଛି ।

ମୁଁ କଲେଜ ପଢ଼ା ସାରି ରେଭେନ୍‌ସା କଲେଜରେ ଅଧ୍ୟାପକ ହେଲି ୧୯୪୯ ମସିହାରେ । ୧୯୪୮ ମସିହାରେ କଟକ ଖ୍ରୀଷ୍ଟ କଲେଜରେ ଓଡ଼ିଆ ଅଧ୍ୟାପକ ଭବରେ ଶ୍ରୀଧର ଦାସ ଯୋଗ ଦେଲେ ।

ତାଙ୍କ ସହିତ ମୋର ଘନିଷ୍ଠ ସମ୍ପର୍କ ହେଲା । ବହୁତ ଦିନ ପର୍ଯ୍ୟନ୍ତ ତାଙ୍କ ପାଖରେ ବାରମ୍ବାର ନିଯୁକ୍ତି ପାଇଥିଲି ସହକାରୀ ପରୀକ୍ଷକ ଭବରେ । ପ୍ରାୟ ସାତ ଆଠଥର ତାଙ୍କ ସହିତ କାମ କରିବାକୁ ପଡ଼ିଛି । ଖାତା ପାଇବା ପରେ ଦୁଇ ତିନିଦିନ ମଧ୍ୟରେ ଅଧ୍ୟାପକ ଦାସଙ୍କ ପାଖରେ ନମୁନା ଖାତା ନପହଞ୍ଚିଲେ ସେ ପୋଷ୍ଟକାର୍ଡରେ କଡ଼ା ନିର୍ଦ୍ଦେଶ ଦେଇଥାନ୍ତି । ରେଭେନ୍‌ସା କଲେଜରୁ ସାଇକେଲରେ ତୁଳସୀପୁର ଖାତା ପ୍ରସଙ୍ଗରେ ଧାଇଁବାକୁ ପଡ଼ିଥାଏ ।

ମୁଁ ଭାବେ ଏଭଳି ଅଧ୍ୟାପକଙ୍କ ନିକଟରେ ପରୀକ୍ଷକ ହେବା ଏକ କଠିନ ଶାସ୍ତି । ନମୁନା ଖାତା ଗୁଡ଼ିକ ଗୋଟି ଗୋଟି କରି ଦେଖିବେ । ନିକିତି ତଉଲ ଭଳି ନମ୍ବର । ଟିକିଏ ବେଶୀ ହୋଇଥିଲେ କହିବେ "ବଂଶୀ ବାବୁ ତୁମେ ଭରି ତର ତରରେ ଖାତା ଦେଖୁଛ । ୟୁନିଭରସିଟି କଥା ଜାଣିଛତ । ଶେଷକୁ ତୁମେ ଯିବ, ମୁଁ ଯିବି ।" ସେ ବହୁତ ଅନୁରୋଧ କରନ୍ତି ଭଲଭାବରେ ଖାତା ଦେଖିବାକୁ ।

ତା'ପରେ ମୁଁ ଖାତା ଦେଖିସାରି ହାତଟଣା ରିକ୍ସାରେ ଖାତା ବିଡ଼ା ବୋଝେଇ କରି ଯାଏ ଅଧ୍ୟାପକ ଦାସଙ୍କ ଘରକୁ । ଦିନ ଦଶଟା ବେଳକୁ ଗଲେ ମୋତେ ସେଠାରୁ ଫେରିବାକୁ ପଡ଼େ ସନ୍ଧ୍ୟା ବେଳକୁ । ଗୋଟି ଗୋଟି ଖାତାକୁ ସେ ଦେଖିବେ । ମୁଁ ଭୁଲ କାଟିଲା ପରେ ଛାଡ଼ି ଯାଇଥିବା ଭୁଲ୍ କାଟି ମୋ ଆଡ଼କୁ ଅନେଇ ହସନ୍ତି । ଘଣ୍ଟା ଘଣ୍ଟା ଧରି ପୁନର୍ବାର ସଂଶୋଧନ । ବସି ବସି ହାତ କ'ଣ ହୋଇଯାଏ । ସେ କହନ୍ତି "ବଂଶୀ ବାବୁ ଏ ସବୁ ତ ପିଲାଖେଳ କଥା ନୁହେଁ– ଦେଖିଲ କେତେ ଭୁଲ୍ ଛାଡ଼ି ଯାଇଛ ।" ଦିନକରେ ସରେ ନାହିଁ– ଖାତା ଦେଇ ସାରିଲା ପରେ ବି ମୋତେ ହପ୍ତାଏ ଖଣ୍ଡେ ତାଙ୍କ ଘରକୁ ଦଉଡ଼ିବାକୁ ପଡ଼ିଥାଏ । ଯେଉଁଦିନ ଡେରି ହୋଇଯାଏ ସେ କହନ୍ତି "ବଇଁଶୀ ବାବୁ ଆମ ଘରେ ଯାହା ଅଛି ଗଣ୍ଡାଏ ଖାଇଦିଅ । ତୁମେ ପଖାଳ ଖାଅଟି ?" ଅନେକ ଥର ଖରଦିନେ ତାଙ୍କ ଘରେ ପଖାଳ ଖାଇଛି ।

କେତେ ନିରାଡ଼ମ୍ବର ଜୀବନ । ତାଙ୍କର ଜୀବନରେ ସଉକିନିଆ ଜିନିଷ ହେଉଛି ପାନ । ଏଣେ ଖାତା ଦେଖା । ଜଗତ୍‌ସିଂହପୁର ହାଇସ୍କୁଲର ବିଭିନ୍ନ ଅନୁଭୂତି ନେଇ ଗପ । ଶ୍ରୀକୃଷ୍ଣ ମହାପାତ୍ରଙ୍କ ସହିତ ତାଙ୍କର ସମ୍ବନ୍ଧ । ସ୍କୁଲ କିରାଣୀ ଅନାଦି ବାବୁଙ୍କର ଅଫିସ ପରିଚାଳନାରେ ଦକ୍ଷତା । ତାଙ୍କ ପୂର୍ବରୁ ସ୍କୁଲ ଅବସ୍ଥା କିପରି ଶୋଚନୀୟ ଥିଲା, ଏମିତି ଅନେକ କଥା । ଏ ସବୁ କଥା କହି ସେ ନିଜେ ହସୁଥିଲେ ଓ ହସାଉଥିଲେ । ଖାତା ଦେଖା, ମଝିରେ ମଝିରେ ଗପ । ଗପ ମଝିରେ କହନ୍ତି, ବଇଁଶୀ ବାବୁ ପାନ ଖାଇବ କି ? ଉଭୟ ଗୁଣ୍ଡିପାନ ଭକ୍ତ । ତେଣୁ ଘଣ୍ଟା ଘଣ୍ଟା ଧରି ଅଖାଡୁଆ ପରୀକ୍ଷା କାମ– ନମ୍ବର ଗୁଡ଼ିକର ମିଶାଣ ଜଣା ପଡ଼େ ନାହିଁ ।

ତାଙ୍କ ପିଲଙ୍କ ଭିତରେ ମୁଁ ଜାଣିଥିଲି ତାଙ୍କର ବଡ଼ପୁଅ ଜଗନ୍ନାଥଙ୍କୁ । ପୁଅଟିର ନାଁ ଜଗନ୍ନାଥ ପ୍ରସାଦ ଦାସ । ସେ ତାକୁ ଜଗନ ଜଗନ ବୋଲି ଡାକିଥାନ୍ତି । ଝିଅଟିର ନାଁ ବିଷ୍ଣୁ । ସେ ଆଜି ଉତ୍କଳ ବିଶ୍ୱବିଦ୍ୟାଳୟ ନୃତତ୍ତ୍ୱ ବିଭାଗ ପ୍ରଫେସର ଡକ୍ଟର ନବକିଶୋର ବେହୁରଙ୍କର ପତ୍ନୀ । ପରେ ଡକ୍ଟର ଜଗନ୍ନାଥ ପ୍ରସାଦ ଦାସ ଆଇ. ଏସ୍ ଚାକିରୀ କଲେ । ଏବେ ସେ ଚାକିରୀରୁ ଇସ୍ତଫା ଦେଇ ବିଭିନ୍ନ ସାଂସ୍କୃତିକ କାମରେ ମନୋନିବେଶ କରିଛନ୍ତି ।

ତାଙ୍କ ଘରେ ସେତେବେଳେ 'ଅଭ୍ୟୁଦୟ ସାହିତ୍ୟ ସମାଜ' ଗଠିତ ହୋଇଥିଲା । ମୁଁ ତହିଁରେ ମେମ୍ବର ଥିଲି ଓ ଦେଉଳ ସାହିରେ ଅନେକଥର ସେ ସଭରେ ଯୋଗ ଦେଇଥିଲି ।

ପରୀକ୍ଷା ଖାତା ଏତିକିରେ ସରେ ନାହିଁ । ସେତେବେଳର ପ୍ରଧାନ ପରୀକ୍ଷକ ଶ୍ରୀଧର ବାବୁଙ୍କ ନାଁ ଶୁଣିଲେ ମୋତେ ଭରି ଭୟ ଆସେ । ଖାତା ଦେଖିଲା ପରେ ବି ଏତେ ଭୁଲ ସେ ବାହାର କରନ୍ତି । ମିଶାଣରେ ଭୁଲ୍ ଦେଖି ବାରମ୍ବାର ସତର୍କ କରଉ କହନ୍ତି, ବଇଁଶୀ ବାବୁ ମୋର ମନେ ହେଉଛି କେତେବେଳେ ତୁମେ କଟିଯିବ ।

ପ୍ରକୃତରେ ସେଇଆ ହିଁ ଘଟିଲା ଅନେକ ଦିନ ପରେ । ମୁଁ ବଦଳି ହୋଇଗଲି ବାରିପଦାର ମହାରଜା ପୂର୍ଣ୍ଣଚନ୍ଦ୍ର କଲେଜକୁ ୧୯୬୨ ମସିହାରେ ସେହିବର୍ଷ ପୁଣିଥାଏ ସହକାରୀ ପରୀକ୍ଷକ ତାଙ୍କ ପାଖରେ । ପରୀକ୍ଷା ନମ୍ବର ହିସାବରେ ଭୁଲ ବାହାରିଲା । ଅଧ୍ୟାପକ ଦାସ ବିଶ୍ୱବିଦ୍ୟାଳୟକୁ ରିପୋର୍ଟ କରିବା ଫଳରେ ମୋର ପରୀକ୍ଷକ ହେବା ନିଷିଦ୍ଧ ହୋଇଗଲା । ସାମାନ୍ୟ ମିଶାଣ ଭୁଲରେ ଏ ପ୍ରକାର ଦଣ୍ଡ ଭୋଗିବାକୁ ପଡ଼େ ବୋଲି ମୁଁ ଜାଣି ନଥିଲି । ପରେ ବାଟରେ ଅଧ୍ୟାପକ ଦାସ ଦେଖାହେଲେ । ମୁଁ ତାଙ୍କୁ ପରୀକ୍ଷା ବିଷୟ ପଚାରନ୍ତେ ସେ ହସିଦେଲେ ଓ କହିଲେ କ'ଣ କରିବି ମୁଁ । ରିପୋର୍ଟ କରିବାକୁ ବାଧ୍ୟ ହେଲି । ତାପରେ ଅବଶ୍ୟ ସ୍ୱର୍ଗତ ସୁରଜ ମଲ ସାହାଙ୍କୁ ଜଣାଇଲି । ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷଙ୍କୁ ଜଣାଇବାରେ ସେ ଦଣ୍ଡ କୋହଳ କଲେ । ବର୍ଷକ ପାଇଁ ପରୀକ୍ଷକ ପଦରୁ ମୋତେ ବାଦ୍ ଦିଆଗଲା ।

ଅଧ୍ୟାପକ ଦାସ କେତେ ସ୍ନେହୀ ପୁଣି ନିୟମ କାନୁନ୍, ତ୍ରୁଟି ବିଚ୍ୟୁତିରେ ସେ କେଡ଼େ କଠୋର ଭାବିଲେ ଆଶ୍ଚର୍ଯ୍ୟ ହେବାକୁ ପଡ଼େ । ପରେ ତାଙ୍କ ସହ ବହୁବାର ମିଶିଛି । ଘରୋଇ କଥା ସହିତ ତାଙ୍କ ସହ ଲେଖାଲେଖି ବିଷୟ ବହୁତ ଆଲୋଚନା ହୋଇଥାଏ । ସେ ଅଧିକାଂଶ ସମୟ ତାଙ୍କର ଅତୀତ ଜୀବନର ଦୁଃଖମୟ କାହାଣୀ କହି ବସନ୍ତି । ସେ କିପରି ନିଜେ କଠୋର ଜୀବନ ସଂଗ୍ରାମ କରି, ପଖାଳ, ପିଆଜ ଓ ଶୁଖୁଆ ପୋଡ଼ା ଖାଇ ଏପର୍ଯ୍ୟନ୍ତ ଆସିଛନ୍ତି । ଏହିସବୁ ବିଷୟ ତାଙ୍କର ଆତ୍ମଜୀବନୀ **'ସୁଅ ମୁହଁରେ ପଥର'** ବହିରେ ଲେଖି ଯାଇଛନ୍ତି ।

ଅଧ୍ୟାପକ ଶ୍ରୀଧର ଦାସଙ୍କୁ ନଜାଣେ କିଏ ? ତାଙ୍କର 'ସର୍ବସାର ବ୍ୟାକରଣ' ତାଙ୍କୁ ଓଡ଼ିଶାର ପୁର ପଲ୍ଲୀର ଘରେ ଘରେ ଛାତ୍ର ଶିକ୍ଷକ ସମାଜରେ ଅମର କରି ରଖିଛି । ଆମର ଓଡ଼ିଆ ଭାଷାରେ ଖଣ୍ଡେ ଭଲ ବ୍ୟାକରଣ ନଥିଲା । ସେ ଏହି ଅଭାବ ପୂରଣ କରିଥିଲେ । ଆଜି ପର୍ଯ୍ୟନ୍ତ ତାଙ୍କ ବହିଟିକୁ ପରିପୂରଣ କରିବା ପାଇଁ ସେପରି କୌଣସି ଷ୍ଟାଣ୍ଡାର୍ଡ ବ୍ୟାକରଣ ବହି ଲେଖା ଯାଇ ନାହିଁ । ଗତ ୫୦ ବର୍ଷ ଧରି ଓଡ଼ିଶାର ସ୍କୁଲ କଲେଜରେ ତାଙ୍କ ବ୍ୟାକରଣହିଁ ଅଦ୍ୟାବଧି ଶ୍ରେଷ୍ଠ ଓଡ଼ିଆ ଭାଷାର ବ୍ୟାକରଣ ଭାବରେ ପ୍ରସିଦ୍ଧି ଲାଭ କରିଛି ।

ଅଧ୍ୟାପକ ଦାସ ଜଣେ ନିରଳସ ସାହିତ୍ୟ ସାଧକ । ସେ ତାଙ୍କର ଜୀବନକାଳ ମଧ୍ୟରେ ପ୍ରାୟ ୧୨୦ ଖଣ୍ଡରୁ ଉର୍ଦ୍ଧ୍ୱ ପୁସ୍ତକ ରଚନା କରି ଯାଇଛନ୍ତି । ସେ ସର୍ବସାର ବ୍ୟାକରଣ ଅଭିଧାନ ସଂକଳନ କରି ଯାଇଛନ୍ତି । ପାଠ୍ୟ ପୁସ୍ତକ ରାଜ୍ୟରେ ସେ ଥିଲେ ଏକ ସମୟରେ ଅଗ୍ରଣୀ । ସେ ଅର୍ଦ୍ଧ ଶତାଧିକ ଅନୁବାଦ ପୁସ୍ତକ ସହିତ ଅଜସ୍ର ଶିଶୁ ସାହିତ୍ୟ ଲେଖି ଯାଇଛନ୍ତି । ପ୍ରାଚ୍ୟ ସମିତି ରୀତିରେ ସେ ଅନେକ ପ୍ରାଚୀନ ଓ ଆଧୁନିକ କାବ୍ୟର ସଂପାଦନା କରିଛନ୍ତି । ନିଜ ଜୀବନୀ ସହିତ ଅନେକ ମହାପୁରୁଷଙ୍କର ଜୀବନୀ ମଧ୍ୟ ରଚନା କରିଛନ୍ତି ।

ସେ ସ୍କୁଲେଖକ ଭାବରେ, ବୈୟାକରଣ ଭାବରେ ଓଡ଼ିଆରେ ସୁପରିଚିତ । ତାଙ୍କର ଅନେକ ଗବେଷଣା ମୂଳକ ପ୍ରବନ୍ଧ ସେ କାଳର ସହକାର, ଉତ୍କଳ ସାହିତ୍ୟ ପତ୍ରିକାରେ ପ୍ରକାଶ ପାଇଥିଲା । ପରିବାର

ପ୍ରତିପୋଷଣ ପାଇଁ ତାଙ୍କୁ ଜୀବନବ୍ୟାପୀ ସାଧନା କରିବାକୁ ପଡ଼ିଛି– ସେତେବେଳେ ଅଧ୍ୟାପକର ଦରମା ଥିଲା ବହୁତ କମ୍ । ସେଥିପାଇଁ ବହିପତ୍ର ଲେଖାଲେଖିରୁ ସେତେବେଳେ ସେ ଯଥେଷ୍ଟ ଆୟ କରିଥିଲେ । ଏବଂ ସେଥିରେ ହିଁ ସେ କଟକରେ ଘରଦ୍ୱାର କରିବା ସହିତ ସବୁ ପିଲାଙ୍କୁ ଉଚ୍ଚତମ ଶିକ୍ଷା ଦେଇ ମଣିଷ କରି ଠିଆ କରାଇଥିଲେ ।' ସେ ଏ ବିଷୟ ମୋ ଆଗରେ ଅନେକଥର ପ୍ରକାଶ କରିଛନ୍ତି । ତାଙ୍କର ବିଳାସ ବ୍ୟସନ ବୋଲି କିଛି ନଥିଲା । ଯେତେବେଳେ ଦେଖ ସେ କିଛି ନା କିଛି ସାହିତ୍ୟିକ କାର୍ଯ୍ୟ ଓ ଗୃହକର୍ମରେ ବ୍ୟସ୍ତ । ତାଙ୍କ ଜୀବନରେ ନଥିଲା ଆରାମ ବା ଫୁରୁସତ । ସେ ଥିଲେ ଜଣେ ଅଭିଜ୍ଞ ଶାସକ ।

ମୋର ବ୍ୟକ୍ତିଗତ ମତ ଯେ ତାଙ୍କର ସମସ୍ତ ସାହିତ୍ୟିକ କୃତି ସଂଗ୍ରହ କରଯାଇ "ଶ୍ରୀଧର ରଚନାବଳୀ" ଗ୍ରନ୍ଥ ପ୍ରକାଶିତ ହେଲେ ତାଙ୍କର ଯଥାର୍ଥ ସ୍ମୃତି ରକ୍ଷିତ ହୋଇ ପାରନ୍ତା ଓ ଭବିଷ୍ୟତ ଦାୟାଦଙ୍କ ଗବେଷଣା ପାଇଁ ତାହା ଉତ୍କୃଷ୍ଟ ସମ୍ପଦ ହୋଇ ରହନ୍ତା ।

ଅଧ୍ୟାପକ ଦାସ କେବେ ଦୁଃଖରେ ଭାଙ୍ଗି ପଡ଼ି ନାହାଁନ୍ତି ବା ତାଙ୍କର ଧୈର୍ଯ୍ୟଚ୍ୟୁତି ଘଟି ନାହିଁ । ସେ ଥିଲେ ଆମ ସମୟର ଜଣେ ଆଦର୍ଶ କର୍ମବୀର ଓ ସାହିତ୍ୟ ସାଧକ । ସେ ମଣିଷ ଭାବରେ ଅଯାଚିତ ଭାବରେ ବହୁ ଛାତ୍ରଙ୍କୁ ସାହାଯ୍ୟ କରିଛନ୍ତି– ଅନେକ ଲୋକଙ୍କୁ ସେ ମଣିଷ କରି ଯାଇଛନ୍ତି । ତାଙ୍କର ଓଡ଼ିଆ ଭାଷା ଓ ସାହିତ୍ୟକୁ ମହାନ୍ ଅବଦାନ ପାଇଁ ସେ ଚିର ସ୍ମରଣୀୟ ହୋଇ ରହିବେ । କବିବର ରାଧାନାଥ ଭାଷାରେ–

"ତୁମ୍ଭ ମାଟି ଦେହ ଗ୍ରାସିଛି ଶ୍ମଶାନ
ମାତ୍ର ଯଶୋଦେହେ ତୁମ୍ଭେ ଆୟୁଷ୍ମାନ ।"



# ସ୍ମୃତିରୁ ଖିଏ

ଅଧ୍ୟକ୍ଷ ଡକ୍ଟର ଦେବେନ୍ଦ୍ର ମହାନ୍ତ

ଏବେ ବି ମନେଅଛି– ସେ ଚିଠିଟି ଏବେ ବି ମୋ ପାଖରେ ଅଛି । ୧୯୫୯ ମସିହା ଅଗଷ୍ଟ ମାସ ୯ ତାରିଖ ସକାଳେ ଖ୍ରୀଷ୍ଟ ମହାବିଦ୍ୟାଳୟର ତତ୍କାଳୀନ ଜଣେ କର୍ମଚାରୀ ବାଞ୍ଛାନିଧି ଚୌଧୁରୀ ହଠାତ୍ ମୋର ସୁତାହାଟସ୍ଥିତ ବାସଗୃହରେ ପହଞ୍ଚି ମୋତେ ଖଣ୍ଡିଏ ପତ୍ର ଦେଲେ । ପତ୍ରଟି ଦେଇଥିଲେ ଅଧ୍ୟାପକ ଶ୍ରୀଧର ଦାସ । ଇଂରେଜୀରେ ଲେଖିଥିଲେ, ମୋର ଚାକିରୀ ପାଇଁ କଲେଜର ଅଧ୍ୟକ୍ଷଙ୍କ ସହିତ ସାକ୍ଷାତ କରିବାକୁ । ମୋ ଚାକିରୀ ପାଇଁ ସେ କାହିଁକି ପତ୍ର ଲେଖିଲେ, ଏହା ଏକ ସାଧାରଣ ପ୍ରଶ୍ନ ହୋଇପାରେ । ସେଥିପାଇଁ ମୂଳରୁ କହି ରଖୁଛି, ସେତେବେଳେ ଖ୍ରୀଷ୍ଟ କଲେଜ କହିଲେ ବୁଝାଉଥିଲା ଜଣେ ଲୋକର ଉତ୍ସର୍ଗୀକୃତ ଜୀବନର କର୍ମ-କ୍ଷେତ୍ର । ସେହି ଲୋକଟି ଥିଲେ ଅଧ୍ୟାପକ ଶ୍ରୀଧର ଦାସ । ଅଧ୍ୟକ୍ଷଙ୍କଠାରୁ ଆରମ୍ଭ କରି ପିଅନଙ୍କ ପର୍ଯ୍ୟନ୍ତ ପ୍ରତ୍ୟେକଙ୍କର ସେ ଥିଲେ ପରାମର୍ଶଦାତା । କେବଳ ଶିକ୍ଷାଦାନ ନୁହେଁ, କଲେଜର ପ୍ରତ୍ୟେକ କ୍ଷେତ୍ରରେ ତାଙ୍କର କର୍ମପ୍ରବଣତା ସମ୍ପୂର୍ଣ୍ଣ ଭାବରେ ବ୍ୟାପ୍ତ ଥିଲା । ଖ୍ରୀଷ୍ଟ କଲେଜରେ କର୍ମରତ ଥିବା ସମୟ ମଧ୍ୟରେ ସେ କଲେଜ କର୍ତ୍ତୃପକ୍ଷଙ୍କୁ ବହୁ କାର୍ଯ୍ୟରେ ସହାୟତା କରିଥିଲେ କହିଲେ ତାଙ୍କ ପ୍ରଶଂସା ଯଥେଷ୍ଟ ହେବ ନାହିଁ । ମାତ୍ର ତାଙ୍କର ସ୍ୱତଃ ସାହାଯ୍ୟକାରୀ ମନୋବୃତ୍ତିର ପ୍ରତିଦାନରେ ସେ ଯେ ବିଶେଷ କିଛି ପାଇନାହାଁନ୍ତି, ଏକଥାକୁ ଅସ୍ୱୀକାର କରିବାର ଉପାୟ ନାହିଁ ।

ସେ ଥିଲେ ଓଡ଼ିଆ ସାହିତ୍ୟର ଅଧ୍ୟାପକ । ତାଙ୍କର ଶିକ୍ଷାଦାନ ପ୍ରଣାଳୀ ଅନ୍ୟ ଅଧ୍ୟାପକମାନଙ୍କ ନିକଟରେ ଶିକ୍ଷଣୀୟ ବିଷୟ । ତାଙ୍କ

ବିଜ୍ଞତା ନିକଟରେ ଆମେସବୁ ନତମସ୍ତକ ହେଉଥିଲୁ । ପ୍ରାଚୀନ ସାହିତ୍ୟରେ ତାଙ୍କର ଦକ୍ଷତା ଅକଳନୀୟ । ତଥାପି ଆଧୁନିକ ସାହିତ୍ୟରେ ତାଙ୍କ ପ୍ରବେଶ ଯଥେଷ୍ଟ ଥିଲା । ତାଙ୍କ ସହିତ କର୍ମ କରିବାର ସୌଭାଗ୍ୟ ଆମେ କେତେଜଣ ପାଇଥିଲୁ ଏବଂ କୌଣସି ପ୍ରକାର ଅସୁବିଧା ଦେଖାଦେଲେ ତାଙ୍କ ପରାମର୍ଶ ପାଇଁ ଅପେକ୍ଷା କରୁଥିଲୁ । ଯେତେ ଯାହା ଅସୁବିଧା ହେଉନା କାହିଁକି, ସେସବୁକୁ ସେ ହସି ହସି ଅତ୍ୟନ୍ତ ସହଜ ଭାବରେ ଦୂର କରିବାର ପଥ ପ୍ରଦର୍ଶନ କରୁଥିଲେ । କେବଳ କଲେଜ ଜୀବନର ସହକର୍ମୀ ଭାବରେ ନୁହେଁ, ଆମେ ସବୁ ଅନୁଭବ କରି ପାରିଥିଲେ, ସତେ ଯେପରି ଆମେ ସବୁ ତାଙ୍କ ପରିବାର ଭୁକ୍ତ । ସହକର୍ମୀ ମାନଙ୍କୁ ଏପରି ଆନ୍ତରିକତା ସହିତ ଆପଣାର କରିନେବା ପ୍ରବୃତ୍ତି ଓଡ଼ିଶାରେ ଖୁବ୍ କମ୍ ଲୋକଙ୍କ ମଧ୍ୟରେ ଦେଖାଦିଏ । ଏ ପ୍ରସଙ୍ଗରେ ଗୋଟିଏ ଦୁଇଟି ଘଟଣା ଏଠାରେ ଉଲ୍ଲେଖ ନକରି ରହିପାରୁ ନାହିଁ ।

ସେତେବେଳେ କଲେଜର ଅଧ୍ୟକ୍ଷ ଥିଲେ ରେଭରେଣ୍ଡ ବ୍ରହ୍ମାନନ୍ଦ ମହାନ୍ତି । ସେ ଥିଲେ ଜଣେ ସୁଦକ୍ଷ ପ୍ରଶାସକ ଓ ଅଭିଜ୍ଞ ଅଧ୍ୟାପକ । ଇଂରେଜୀ ସାହିତ୍ୟରେ ତାଙ୍କ ଅଧ୍ୟାପନା ଅତ୍ୟନ୍ତ ଉଚ୍ଚକୋଟୀର । ସକାଳୁ ଆସି ସେ ପ୍ରତ୍ୟେକ କ୍ଲାସରେ ବୁଲି ବୁଲି ଅଧ୍ୟାପନା ପର୍ଯ୍ୟବେକ୍ଷଣ କରନ୍ତି । ଦିନେ ଆମରି ବିଭାଗର ଜଣେ ଅଧ୍ୟାପକ ଆସି କ୍ଲାସ ନେବା ପାଇଁ ଦଶ ମିନିଟ୍ ଡେରି ହୋଇଗଲା । ଅଧ୍ୟକ୍ଷ ସେହି ଅଧ୍ୟାପକଙ୍କୁ କୈଫିୟତ୍ ମାଗିବା ପାଇଁ ଅଧ୍ୟାପକ ଶ୍ରୀଧର ଦାସଙ୍କୁ ଆଦେଶ ଦେଲେ । ଆମେ ସବୁ ଅଧ୍ୟାପକ ମାନଙ୍କ ବସିବା ଘରେ ବସିଛୁ । ହଠାତ୍ ଅଧ୍ୟାପକ ଶ୍ରୀଧର ଦାସ ଦୁଇଖଣ୍ଡି ଟାଇପ୍‌କରା କାଗଜ ଆଣି ସମ୍ପୃକ୍ତ ଅଧ୍ୟାପକଙ୍କୁ ଦେଲେ ଓ ଖଣ୍ଡିକରେ ଦସ୍ତଖତ୍ କରି ତାଙ୍କୁ ଫେରାଇ ଦେବାକୁ କହିଲେ । ସଂପୃକ୍ତ ଅଧ୍ୟାପକ ଜଣକ ହୁଏତ କଥାଟାକୁ ଭଲଭାବରେ ଗ୍ରହଣ କରିନାହିଁ । ସେହି ଦୁଇଖଣ୍ଡି କାଗଜରୁ ଖଣ୍ଡିଏ ଥିଲା କୈଫିୟତ୍ ମାଗିବାର ଚିଠି ଓ ଅନ୍ୟଟି ଥିଲା କୈଫିୟତ୍ । କୈଫିୟତ୍‌ରେ ଅଧ୍ୟାପକ ଶ୍ରୀଧର ଦାସ କାରଣ ଦର୍ଶାଇଥିଲେ ଯେ, ସଂପୃକ୍ତ ଅଧ୍ୟାପକ ସାଇକେଲରେ କଲେଜକୁ ଆସୁଥିବା ସମୟରେ ବାଟରେ ସାଇକେଲ ଚକରୁ ପମ୍ପ୍ ବାହାରିଯିବା ଫଳରେ ସେ ଠିକ୍ ସମୟରେ ଆସି କଲେଜରେ ପହଞ୍ଚ

ପାରିଲେ ନାହିଁ । ଏଠାରେ କେବଳ ଏତିକି କହିବାର କଥା, କର୍ତ୍ତୃପକ୍ଷ କେବଳ କୈଫିୟତ୍ ମାଗିବା ପାଇଁ ସିନା ଆଦେଶ ଦେଇଥିଲେ, ମାତ୍ର କୈଫିୟତ୍‌ଟା ତିଆରି କରିଦେବା ପାଇଁ ନୁହେଁ । ଅଧ୍ୟାପକ ଶ୍ରୀଧର ଦାସ ତାଙ୍କ ସହକର୍ମୀ ମାନଙ୍କୁ କେତେ ଆପଣାର ଭାବୁଥିଲେ ତାହା ଏହି ପ୍ରକାର ବହୁ ଘଟଣାରୁ ଜଣାପଡ଼େ ।

ବୋଧହୁଏ ୧୯୬୧ ମସିହା । ମୁଁ ସେତେବେଳେ ମୋର କେତେଖଣ୍ଡି ବହି ତାଙ୍କୁ ଉପହାର ସ୍ୱରୂପ ଦେଇଥିଲି । ସେ ତାକୁ ପାଇ ଅତ୍ୟନ୍ତ ଆନନ୍ଦିତ ହୋଇଥିଲେ । କେବଳ ସେତିକି ନୁହେଁ ମୋତେ ଏ ଦିଗରେ ଉତ୍ସାହିତ କରିବା ପାଇଁ ସେ ତାଙ୍କ ଦ୍ୱାରା ଲିଖିତ ଏକ ପୁସ୍ତକରେ ମୋର ବହି ଗୁଡ଼ିକୁ ଉଦାରତାର ସହିତ ସ୍ୱୀକୃତି ଦେଇଥିଲେ । ଏହା ମୋ ପକ୍ଷରେ କମ୍ ଗୌରବର କଥା ନୁହେଁ । ସେହିବର୍ଷ ସେ ଥରେ ମୋ ଘରକୁ ଯାଇଥିଲେ । ମୁଁ ସେତେବେଳେ ବାହାରକୁ ଯାଇଥିଲି । ସେ ମୋର ପଢ଼ା ଟେବୁଲ ପାଖରେ ବସି ବହିପତ୍ର ଦେଖୁଥିଲେ । ମୁଁ ଯେତେବେଳେ ଆସି ପହଞ୍ଚେ ଦେଖେତ ସେ ଟେବୁଲ ପାଖରେ ବସି ଅତ୍ୟନ୍ତ ନିବିଷ୍ଟ ଚିତ୍ତରେ କଣ ଗୁଡ଼ାଏ ଲେଖୁଛନ୍ତି । ମୋତେ ଦେଖି ତାଙ୍କ ଲେଖା ବନ୍ଦ୍ କଲେ ଏବଂ କହିଲେ ଅଳ୍ପ ସମୟ ମଧ୍ୟରେ ଯେତିକି ସମ୍ଭବ ହେଲା ସେତିକି ସାହାଯ୍ୟ ସେ ମୋତେ କରିଛନ୍ତି । ଦେଖିଲି, ସେହି ସମୟରେ ରାଧାନାଥ ରାୟଙ୍କର ଚନ୍ଦ୍ରଭାଗା କାବ୍ୟକୁ ସମ୍ପାଦନା କରିବା ନିମନ୍ତେ ବାରଜଣ ଗୋଟାଏ ପାଖରେ ପାଠୋଦ୍ଧାର କରି ପୃଷ୍ଠାର ନିମ୍ନଦେଶରେ ଟୀକା ନିମନ୍ତେ ଯେଉଁ ସ୍ଥାନ ଛାଡିଥିଲି ସେଗୁଡ଼ିକୁ ସେ ଲେଖି ଦେଇଛନ୍ତି । ପ୍ରାୟ କାବ୍ୟର ଅର୍ଦ୍ଧାଂଶ ସେ ଟୀକା ଲେଖି ଦେଇଥିଲେ । କୃତଜ୍ଞତାରେ ମୋର ମୁଣ୍ଡ ନଇଁ ଯାଇଥିଲା ସେଦିନ । କର୍ମ ପ୍ରବଣତାର ଏହା ଏକ ଅପୂର୍ବ ଦୃଷ୍ଟାନ୍ତ ।

ସେମିତି, ଆଉ ଦିନକର କଥା । ମୋର ଗୋଟିଏ ବହିର ପ୍ରୁଫ୍ ପ୍ରେସ୍‌ବାଲା ଆଣି ମୋତେ କଲେଜରେ ଦେଇଗଲା । ମୁଁ ତାକୁ ବ୍ୟାଗ୍ ଭିତରେ ରଖିବା ପୂର୍ବରୁ ସେ ତାକୁ ମୋ ହାତରୁ ନେଇଗଲେ । ତାପରେ ମୁଁ କ୍ଲାସକୁ ଗ୍ଲଲିଗଲି । କ୍ଲାସରୁ ଫେରି ଦେଖେତ, ସେ ପ୍ରୁଫ୍‌ଟିକୁ ସଂପୂର୍ଣ୍ଣ

ସଂଶୋଧନ କରି ପିଅନ ହାତରେ ଧରାଇ ଦେଇ ଯାଇଛନ୍ତି । ଅଯାଚିତ ଭାବରେ ଅନ୍ୟକୁ କାର୍ଯ୍ୟରେ କେତେଜଣ ଏପରି ଭାବରେ ସାହାଯ୍ୟ କରି ପାରନ୍ତି ? ଅଧ୍ୟାପନା ସମୟରେ ବେଳେ ବେଳେ ବାଟବଣା ହେଲେ ନିଃସଙ୍କୋଚ ଭାବରେ ମୁଁ ତାଙ୍କର ସାହାଯ୍ୟ ଭିକ୍ଷା କରିଛି, ସେ ମଧ୍ୟ ଅକୁଣ୍ଠିତ ଭାବେ ମୋର ଅଭାବ ଦୂର କରିଛନ୍ତି ତାଙ୍କର ଜ୍ଞାନଗର୍ଭ ଉପଦେଶ ଦ୍ୱାରା ।

ତାଙ୍କ ସହିତ କଥାବାର୍ତ୍ତା କରିବା ସମୟରେ ଅଧ୍ୟାପକ ବନ୍ଧୁ ପଠାଣି ପଟ୍ଟନାୟକ ଓ ମୁଁ କେବେହେଲେ କୌଣସି ପ୍ରକାର ଧରାବନ୍ଧା ରୀତି ଅନୁସରଣ କରିନାହୁଁ । ଆମେ ତାଙ୍କ ସହିତ କଥାବାର୍ତ୍ତା ସମୟରେ ଯଦି କେହି ଶୁଣନ୍ତି ତେବେ ସେ ମନେ କରିବେ ଯେ ଆମେ ତିନିହେଁ ଯେପରି ଘନିଷ୍ଠ ବନ୍ଧୁ । ମାତ୍ର ତାଙ୍କ ଆମ ଭିତରେ ବୟସର ବ୍ୟବଧାନ ବହୁତ ଅଧିକ । ସେ ପିତୃ ତୁଲ୍ୟ, ଆଉ ଆମେ ତାଙ୍କର ସନ୍ତାନୋପମ । ତଥାପି ମମତା ଆମକୁ ତାଙ୍କର ଏତେ ପାଖକୁ ଟାଣି ନେଇଥିଲା । ମମତାର ସେଇ ସ୍ୱାଦ ପାଇବା ପାଇଁ ତାଙ୍କର ଅବସର ପ୍ରାପ୍ତି ପରେ ଆମେ ଦୁହେଁ ବାରମ୍ବାର ତାଙ୍କ ପାଖକୁ ଧାଇଁ ଯାଉଥିଲୁ । କେବେ ଆମର ଯିବାରେ କିଛିଦିନ ବିଳମ୍ବ ହୋଇଗଲେ, ସେ ଖବର ପଠାଇଥିଲେ ଆମକୁ ଯିବାଲାଗି । ଆମେ ଯଦି କୌଣସି ଦିନ ଉପରବେଳା ତାଙ୍କ ପାଖରେ ପହୁଞ୍ଚି ଯାଉଥିଲୁ, ତେବେ ସେ ଆମକୁ ବସାଇ ଦେଇ ସଙ୍ଗେ ସଙ୍ଗେ ନିଜେ ରାସ୍ତା ଉପରକୁ ବାହାରି ପଡ଼ୁଥିଲେ ଆମ ପାଇଁ ଜଳଖିଆ ଆଣିବାକୁ । ତାଙ୍କର ସ୍ନେହ ଆମ ପ୍ରତି ସବୁବେଳେ ଅସରନ୍ତି ।

ମୋର ଯେତେବେଳେ ବହି ଖଣ୍ଡିଏ ବାହାରେ, ସେତେବେଳେ ମୁଁ ସେ ଖଣ୍ଡିକ ଧରି ତାଙ୍କ ନିକଟକୁ ଯାଏ । ବହିଟି ଦେଖି ଅତ୍ୟନ୍ତ ଆନନ୍ଦିତ ହୁଅନ୍ତି ସେ । ପୁଣି, କେତେ ପ୍ରକାର ଉପଦେଶ ଦିଅନ୍ତି । ତାଙ୍କର ଉପଦେଶକୁ ସଂପୂର୍ଣ୍ଣ ଭାବରେ ପାଳନ କରିବା ଏପର୍ଯ୍ୟନ୍ତ ମୋ ପକ୍ଷରେ ସମ୍ଭବ ହୋଇନାହିଁ । ତଥାପି ମୋର ଚେଷ୍ଟା ଏପର୍ଯ୍ୟନ୍ତ ସରିନାହିଁ । ସେ ଯେତେବେଳେ ଜାଣିବାକୁ ପାଇଲେ ଯେ ମୁଁ ଓଡ଼ିଆ ସାହିତ୍ୟର ଇତିହାସ ଲେଖିବାକୁ ଉଦ୍ୟମ କରୁଛି, ସେତେବେଳେ ସେ ତାଙ୍କ ନିକଟରେ ଥିବା

କେତେକ ଦୁଷ୍ପ୍ରାପ୍ୟ ବହି ମୋତେ ଦେଇଥିଲେ ଓ ସେହି ବହି ବିଷୟରେ କେତେକ ଅଜ୍ଞାତ ତଥ୍ୟ ପ୍ରକାଶ କରିଥିଲେ । ସେ ବାରମ୍ବାର ମୋତେ ଆଦେଶ ଦେଇଛନ୍ତି ଖଣ୍ଡିଏ ଓଡ଼ିଆ ଅଭିଧାନ ପ୍ରଣୟନ କରିବାକୁ ସେ ନିଜେ ନବ ଅଭିଧାନ ପ୍ରଣୟନ କରିଛନ୍ତି । ମାତ୍ର ସେଥିରେ ତାଙ୍କର ସନ୍ତୋଷ ଆସିନାହିଁ । ତାହା ଅପେକ୍ଷା ଅଧିକ ମାନର ଏକ ଓଡ଼ିଆ ଅଭିଧାନ ପ୍ରଣୟନ ପାଇଁ ତାଙ୍କର ବାରମ୍ବାର ଉପଦେଶ ମୋତେ ସେହି କାର୍ଯ୍ୟରେ ଉତ୍ସାହିତ କରିଅଛି ।

ଜ୍ଞାନ ରାଜ୍ୟର ଯେ କୌଣସି ଇଲାକାରେ ତାଙ୍କର ପ୍ରବେଶକୁ ସ୍ୱୀକାର କରିବାର କଥା । ଇଂରେଜୀ ଭାଷା ଓ ସାହିତ୍ୟରେ ତାଙ୍କର ଦକ୍ଷତା ବିଶେଷ ଭାବରେ ଥିଲା । ଇତିହାସ, ଭୂଗୋଳ, ଗଣିତ, ବିଜ୍ଞାନ, ଅର୍ଥନୀତି, ସମାଜ ନୀତି, ଦର୍ଶନ, ଜ୍ୟୋତିଷ ଯାହା ହେଉନା କାହିଁକି ସବୁ ବିଷୟରେ ତାଙ୍କର ଜ୍ଞାନ ଥିଲା ପର୍ଯ୍ୟାପ୍ତ । ସେଇଥିପାଇଁ ଅଧ୍ୟାପକ ଶ୍ରୀଯୁକ୍ତ ନିତ୍ୟାନନ୍ଦ ଦର୍ଜୀ ତାଙ୍କୁ ନାମିତ କରିଥିଲେ "ଚଳନ୍ତି ଜ୍ଞାନକୋଷ" । ତାଙ୍କର ଏ ସବୁ ବିଷୟରେ ଜ୍ଞାନ କିପରି ଏତେ ବ୍ୟାପ୍ତ ବୋଲି ଅନେକ ସମୟରେ ଅନେକ ବ୍ୟକ୍ତି ପ୍ରଶ୍ନ କରନ୍ତି । ସେଇମାନେ ମଧ୍ୟ ପ୍ରଶ୍ନର ଉତ୍ତର ଦିଅନ୍ତି ଯେ ସେ ଥିଲେ ଜଣେ ପୁରୁଣାକାଳ ତଥା ହେଡ୍‌ମାଷ୍ଟର । ସେ ସମୟରେ ହେଡ୍‌ମାଷ୍ଟର କହିଲେ ଯାହା ବୁଝାଇଥିଲା ଆଜି ତାହା ବୁଝାଏ ନାହିଁ । ଖ୍ରୀଷ୍ଟ କଲେଜରେ ଓଡ଼ିଆ ବିଭାଗରେ ଅଧ୍ୟାପକ ଗ୍ରହଣ କରିବା ପୂର୍ବରୁ ସେ ଓଡ଼ିଶାର ବିଭିନ୍ନ ଉଚ୍ଚ ବିଦ୍ୟାଳୟରେ ପ୍ରଧାନ ଶିକ୍ଷକ ଭାବରେ କର୍ମ କରି ଉଚ୍ଚ ପ୍ରଶଂସିତ ହୋଇଥିଲେ । ଶେଷରେ ଯେତେବେଳେ ତାଙ୍କୁ ଓଡ଼ିଆ ଅଧ୍ୟାପକ ଭାବରେ ରେଭେନ୍‌ସା କଲେଜରେ ଯୋଗ ଦେବାକୁ ସୁଯୋଗ ମିଳିଥିଲା, ସେତେବେଳେ ସେ ସେହି ସୁଯୋଗକୁ ଗ୍ରହଣ କରିପାରି ନଥିଲେ, କାରଣ ଜଣେ ପ୍ରଧାନ ଶିକ୍ଷକ ଭାବରେ ସେତେବେଳେ ସେ ଯାହା ଦରମା ପାଉଥିଲେ, ତାହା ଅଧ୍ୟାପକ ଭାବରେ ପାଇବାକୁ ଥିବା ଦରମାଠାରୁ ଅଧିକ ଥିଲା । ସେତେବେଳେ ଓଡ଼ିଆ ଅଧ୍ୟାପକ ପଦକୁ ପ୍ରତ୍ୟାଖ୍ୟାନ କରି ପୁଣି କର୍ମଚକ୍ରର ଆବର୍ତ୍ତନରେ ସେ ଖ୍ରୀଷ୍ଟ ମହାବିଦ୍ୟାଳୟର ଓଡ଼ିଆ ବିଭାଗର ଅଧ୍ୟାପକ ପଦ ଗ୍ରହଣ କରିଥିଲେ । ସାହିତ୍ୟର ଅଧ୍ୟାପକ, ବିଭିନ୍ନ ଜ୍ଞାନର ଅଧିକାରୀ ହୋଇ ମଧ୍ୟ ତାଙ୍କ ମନରେ ଗର୍ବ ବା ଅଭିମାନର ସତ୍ତା କେହି କେବେ ଲକ୍ଷ୍ୟ କରିନାହିଁ । ହୋମିଓପାଥି ଚିକିତ୍ସାରେ ମଧ୍ୟ ତାଙ୍କର କମ୍ ଦକ୍ଷତା ନଥିଲା ।

ସମୟ ସମୟରେ ଆମେ ତାଙ୍କୁ ତାଙ୍କ ପିଲାବେଳର କଥା, ପାଠପଢ଼ା ବେଳର କଥା, ଭାରତର ସ୍ୱାଧୀନତା ଆନ୍ଦୋଳନର କଥା ପଚାରୁ । ସେ କଥାର ଖିଅ ଏପରି ଭାବରେ ଯୋଡ଼ି ଦିଅନ୍ତି ଯେ ଆମେସବୁ ତହିଁରେ ମୁଗ୍ଧ ହୋଇଯାଉ । ସ୍ୱାଧୀନତା ଆନ୍ଦୋଳନ ବିଷୟରେ ବହୁତ କଥା ସେ ଆମକୁ କହିଛନ୍ତି । ସେପରି ଗୋଟିଏ ଦୁଇଟି କଥା ଏଠି ପ୍ରକାଶ ନକରି ରହିପାରୁ ନାହିଁ ।

ଥରେ ଗୋପବନ୍ଧୁ ଦାସ କଟକ ଆସି କାଠଯୋଡ଼ି ବାଲିରେ ସଭା କରୁ ଥାଆନ୍ତି । ସେତେବେଳେ ଇଂରେଜ ସରକାର ଉତ୍ପାତ କହିଲେ ନସରେ । ଶ୍ରୀଧର ବାବୁ ସେତେବେଳେ ଟ୍ରେନିଂସ୍କୁଲ ହଷ୍ଟେଲରେ ଥାଆନ୍ତି । ଜଣେ ପୋଲିସ୍ ସବ୍‌ଇନ୍‌ସ୍‌ପେକ୍ଟର ହଷ୍ଟେଲକୁ ଆସି ଜଣେ ପିଲାକୁ ସଭା ସ୍ଥଳକୁ ଯିବାପାଇଁ ବାରମ୍ବାର ପ୍ରବର୍ତ୍ତାଇଲେ । ପିଲାଜଣକ ଗିରଫ ହେବା ଆଶଙ୍କା କରି ତାଙ୍କ କଥାରେ ରାଜି ହେଲା ନାହିଁ । ସେ ତାକୁ ସବୁ ପ୍ରକାର ଆଶ୍ୱାସନା ଦେଇ ସଭାକୁ ଯିବାପାଇଁ ଏକରକମ ବାଧ୍ୟ କଲେ । ଅନ୍ୟ-ପିଲାମାନେ ଏହାର କାରଣ ପଚାରିବାରୁ ଜଣା ପଡ଼ିଲା ଯେ ପୋଲିସ୍ ସବ୍-ଇନ୍‌ସ୍‌ପେକ୍ଟର ଜଣକ ଗୋପବନ୍ଧୁଙ୍କ ସଭା ଦେଖିବାକୁ ଅତ୍ୟନ୍ତ ଆଗ୍ରହୀ । ମାତ୍ର ନିଜ ଇଚ୍ଛାରେ ସେ ସେଠାକୁ ଯାଇ ପାରିବେ ନାହିଁ । ପିଲାଟି ସେହି ସଭାକୁ ଗଲେ ତା' ପଛରୁ ଗୋଡ଼ାଇ ଗୋଡ଼ାଇ ସେ ସଭାସ୍ଥଳକୁ ଯିବେ ଓ ତାକୁ ଧରିଆଣି ନଈବନ୍ଧ ଉପରେ ଛାଡ଼ିଦେବେ । ଏହି ଉପାୟରେ ସେ ଗୋପବନ୍ଧୁଙ୍କ ସଭା ଦେଖିବାର ସୁଯୋଗ ପାଇବେ ।

ଆଉ ଗୋଟିଏ କଥା, ଥରେ ମହାତ୍ମା ଗାନ୍ଧୀ କୌଣସି ଏକ ଅଞ୍ଚଳକୁ ଯାଇଥିଲେ । ସେହି ଅଞ୍ଚଳରେ ରେଲଷ୍ଟେସନରେ ଗାଡ଼ି ରହିବା ପରେ ପ୍ରବଳ ଜନଗହଳି ହେଲା । ଜନଗହଳିକୁ ଆୟତ୍ତ କରିବା ପୋଲିସ୍ ପକ୍ଷରେ କଷ୍ଟକର ହୋଇ ପଡ଼ିଲା । ଲୋକମାନେ ମହାତ୍ମା ଗାନ୍ଧୀଙ୍କୁ ଦେଖିବା ପାଇଁ ଏତେ ବ୍ୟାକୁଳ ହୋଇ ପଡ଼ିଲେ ଯେ ସେମାନଙ୍କ ଠେଲାପେଲାରେ ବହୁଲୋକ ଆହତ ହେଲେ । ମହାତ୍ମା ଗାନ୍ଧୀ ଗାଡ଼ିରୁ ଓହ୍ଲାଇବା ସମୟରେ ତାଙ୍କ ଗଳାରେ ଫୁଲମାଳ ପିନ୍ଧାଇ ଦିଆଯିବା ସମୟରେ ତାହା ଖସି ପଡ଼ିବା ଅବସ୍ଥାରେ ପାଖରେ ଠିଆ ହୋଇଥିବା ଜଣେ ପୋଲିସ୍ ଅଫିସର ତାଙ୍କ ବାଡ଼ିରେ ଫୁଲମାଳଟିକୁ ଅଟକାଇ ଦେଇ ଉପରକୁ ଉଠାଇ ଦେଲେ ଓ

ମାଳ ପିନ୍ଧାଇବା ଲୋକ ସହଜରେ ମାଳଟିକୁ ମହାତ୍ମାଙ୍କ ଗଳାରେ ପିନ୍ଧାଇ ଦେଲେ । ଘଟଣାଟି ବେଶ୍ ପ୍ରଚାରିତ ହୋଇଗଲା । ଉପରିସ୍ଥ ହାକିମଙ୍କଠାରୁ ଉକ୍ତ ପୋଲିସ ଅଫିସରଙ୍କୁ କୈଫିୟତ୍ ତଲବ ହେଲା । ସେ କୈଫିୟତ୍ ଦେଲେ ଯେ ମହାତ୍ମା ଗାନ୍ଧୀ ଗୋଟିଏ ଦେଶର ଜନନେତା । ତାଙ୍କ ଗସ୍ତ କ୍ରମରେ ଶାନ୍ତିରକ୍ଷା ଦାୟିତ୍ୱରେ ଥାଇ ତାଙ୍କ ଫୁଲମାଳଟିକୁ ରକ୍ଷା କରିବା ଅପରାଧ ହୋଇ ନପାରେ । ସେ ତ ମହାତ୍ମାଜୀଙ୍କୁ ଫୁଲମାଳ ପିନ୍ଧାଇ ନାହାନ୍ତି, କେବଳ ମାଳଟି ଭୂମିରେ ପଡ଼ିଯିବା ପୂର୍ବରୁ ତାକୁ ଉଦ୍ଧାର କରିଛନ୍ତି । ତାଙ୍କର ଏହି କୈଫିୟତ୍ ସେତବେଳର ଉପରିସ୍ଥ ହାକିମଙ୍କ ବିବେଚନାରେ ଅପରାଧ ଭାବରେ ବିବେଚିତ ହୋଇ ନଥିଲା ।

ପଣ୍ଡିତ ଗୋପବନ୍ଧୁ, ପଣ୍ଡିତ ନୀଳକଣ୍ଠ, ପଣ୍ଡିତ ଗୋଦାବରୀଶ ମିଶ୍ର, ଗୋଦାବରୀଶ ମହାପାତ୍ର, ଗୋପବନ୍ଧୁ ଚୌଧୁରୀ ପ୍ରମୁଖ ନେତୃବୃନ୍ଦଙ୍କ ବିଷୟରେ ସେ ବହୁତ କଥା କହିଛନ୍ତି । ସେଗୁଡ଼ିକ ଯେପରି ଶିକ୍ଷାପ୍ରଦ ସେହିପରି ଅନୁଭୂତି ସିଦ୍ଧ । ଲକ୍ଷ୍ମୀନାରାୟଣ ସାହୁ, ମାୟାଧର ମାନସିଂହ ପଣ୍ଡିତ ବିନାୟକ ମିଶ୍ରଙ୍କ ବିଷୟରେ ତାଙ୍କର ଅନୁଭୂତିର କଥା ଆମକୁ ବିଶେଷ ଭଲ ଲାଗିବାର କଥା ।

ପଣ୍ଡିତ ବିନାୟକ ମିଶ୍ରଙ୍କ ସହିତ ତାଙ୍କର ବ୍ୟକ୍ତିଗତ ସଂପର୍କ ଅତ୍ୟନ୍ତ ଗଭୀର । କଟକ ଆସିଲେ ସେ ଅଧିକାଂଶ ସମୟ ଅଧ୍ୟାପକ ଶ୍ରୀଧର ଦାସଙ୍କ ଘରେ ରହନ୍ତି । ତାଙ୍କର ସାହିତ୍ୟ ସାଧନା ସଂପର୍କରେ ଆମେ ବହୁକଥା ଅଧ୍ୟାପକ ଶ୍ରୀଧର ଦାସଙ୍କଠାରୁ ଶୁଣିବାକୁ ପାଇଛୁ । କେବଳ ଶୁଣିନାହୁଁ, ଏ ବିଷୟରେ ମୋର କିଛି ଅନୁଭୂତି ଆଜି ମନେପଡ଼ୁଛି । ଥରେ ଗୋଟିଏ ଅଳଙ୍କାର ବିଷୟରେ ମୁଁ ଓ ପଠାଣିବାବୁ ଶ୍ରୀଧର ବାବୁଙ୍କୁ ପଚାରିଲୁ । ସେ ତାର ସଠିକ ଉତ୍ତର କହିପାରିଲେ ନାହିଁ । ସେ ଆମକୁ କହିଲେ ଯେ ପଣ୍ଡିତ ମହାଶୟ ତିନିଚାରିଦିନ ଭିତରେ ଆସିବେ । ସେ ଆସିଲେ ତାଙ୍କୁ ପଚାରିବା । ତିନି ଚାରିଦିନ ପରେ ପଣ୍ଡିତ ମହାଶୟ କଟକ ଆସିଲେ ଓ ତାଙ୍କ ଘରେ ରହିଲେ । ଆମେ ଖବର ପାଇ ଶ୍ରୀଧରବାବୁଙ୍କ ଘରେ ଦିନେ ସନ୍ଧ୍ୟା ସମୟରେ ପହଞ୍ଚିଲୁ । ସେତେବେଳକୁ ପଣ୍ଡିତ ମହାଶୟ ଶ୍ରୀଧର ବାବୁଙ୍କ ସହିତ ତାଙ୍କ ଘର ବାରଣ୍ଡାରେ ବସି ଗପ କରୁଥିଲେ ।

ପଣ୍ଡିତ ମହାଶୟଙ୍କର ଆକ୍ଷେପୋକ୍ତିର ଶିକାର ହେଲେ ଶ୍ରୀଧରବାବୁ । ପଣ୍ଡିତ ମହାଶୟ କହିଲେ, ପିଲାମାନେତ ଖୋଜି ଖୋଜି ପାଇଲେ ନାହିଁ, ଆଉ ତୁମେ ନିଜେ କଣ କରୁଥିଲ ? ସେ କହିଲେ, ମୁଁ ମଧ୍ୟ ପାଇଲି ନାହିଁ । ଆମ ସମସ୍ତଙ୍କ ଉପରେ ତାଙ୍କର ଅସନ୍ତୋଷ ପ୍ରକାଶ ପାଇଲା । ତାପରେ ବହୁତ ସାହସ ବାନ୍ଧି ମୁଁ କହିଲି, ଆଜ୍ଞା, ଆପଣ ଗାଳିଦିଅନ୍ତୁ ବା ମାଡ଼ମାରନ୍ତୁ ଆମେ ସହିବୁ । ତାପରେ, ଆପଣ କଣ ଖାଲି ଗାଳି ଦେଉ-ଥିବେ ? ଆମର ଦୋଷ କଣ ? ବାପ ବଞ୍ଚିଥିବା ଅବସ୍ଥାରେ ପୁଅ କାହିଁକି ଅଡ଼ୁଆରେ ପଡ଼ିବ । ଆପଣତ ବସିଛନ୍ତି, ଆମେ କାହିଁକି ହଇରାଣ ହେବୁ ? କଣ ଭାବିଲେ ସେ କେଜାଣି, ତାଙ୍କ ମୁହଁ ଟିକିଏ ପ୍ରସନ୍ନ ଦେଖାଗଲା । ତାପରେ ସେ ଆମ ପ୍ରଶ୍ନର ଉତ୍ତର ଦେଲେ ଏବଂ ସେହି ପ୍ରଶ୍ନର ଉତ୍ତର ଆମେ ତାଙ୍କଠାରୁ ଆଶା କରିଥିଲୁ ବୋଲି ସେ ଆନନ୍ଦିତ ହୋଇଥିଲେ । ଶେଷରେ କହିଲେ, ମୁଁ ସିନା ତୁମମାନଙ୍କୁ ଏତେ ଗାଳିଦେଲି, ମାତ୍ର ମୋ ଗାଳିକୁ ତୁମେମାନେ ଯେ ମନରେ ଧରିନାହଁ, ଏଇଟା ତୁମମାନଙ୍କର ଉଦାରତା । କାରଣ, ଏହି ଅଳଙ୍କାର ବିଷୟରେ କୌଣସି ଅଧ୍ୟାପକ ତୁମମାନଙ୍କୁ ଉତ୍ତର ଦେବା ଅସମ୍ଭବ । ଆମେ ସେଦିନ ଅନୁଭବ କରିଥିଲୁ, ଜ୍ଞାନାଲୋକ ପାଇଥିବା ମୁନିଋଷିମାନେ ମୂର୍ଖଙ୍କ ଉପରେ କିପରି କ୍ରୁଦ୍ଧ ହେଉ ନଥିବେ । ଦୁର୍ବାସାଙ୍କର ଶକୁନ୍ତଳାଙ୍କ ଉପରେ କ୍ରୋଧର ରୂପ କିପରି ଉତ୍କଟ ହୋଇଥିବ, ତାହା ଆମେ କେତେକାଂଶରେ ସେଦିନ ଅନୁଭବ କରିବାକୁ ସମର୍ଥ ହୋଇଥିଲୁ ।

ପଣ୍ଡିତମାନଙ୍କର ଆଚରଣ ବିଶେଷତଃ କ୍ରୋଧଭାବ ବିଷୟରେ ସେ ଅନେକ କଥା କହନ୍ତି । ଥରେ ଭାରତର ତତ୍କାଳୀନ ପ୍ରଧାନମନ୍ତ୍ରୀ ସ୍ୱର୍ଗତ ଲାଲବାହାଦୂର ଶାସ୍ତ୍ରୀଙ୍କର ଅଟଳ ଚରିତ୍ର ବିଷୟରେ ସେ କେତେକ ଉଦା-ହରଣ ଆମକୁ ଦେଇଥିଲେ । ସେ କହିଥିଲେ ଯେ ସଂସ୍କୃତ ପଣ୍ଡିତମାନେ ସ୍ୱଭାବତଃ ଏକଜିଦିଆ । ସେହି ପ୍ରସଙ୍ଗରେ ଜଣେ ପଣ୍ଡିତଙ୍କ କଥା ସେ ଆମକୁ କହିଥିଲେ । ଥରେ କୌଣସି ଏକ ଟ୍ରେନିଂ କ୍ୟାମ୍ପ୍‌କୁ କେତେକ ଶିକ୍ଷକ ଯାଇଥିଲେ । ସେମାନଙ୍କ ମଧ୍ୟରେ ଜଣେ ସଂସ୍କୃତ ପଣ୍ଡିତ ଥିଲେ । ପଣ୍ଡିତେ ଜ୍ୟୋତିଷ ଶାସ୍ତ୍ର ପ୍ରତି ବିଶେଷ ଅନୁରକ୍ତ । ତେଣୁ କ୍ୟାମ୍ପ୍‌ରେ ଥିବା ଅନ୍ୟ ଶିକ୍ଷକମାନେ ସୁଯୋଗ ପାଇ ତାଙ୍କୁ ଥଟ୍ଟା କରନ୍ତି । ମାତ୍ର ପଣ୍ଡିତ

ମହାଶୟ ପରିହାସ ନବୁଝି ଅତିମାତ୍ରାରେ ରଗିଯାଆନ୍ତି । ଦିନେ ଜଣେ ଶିକ୍ଷକଙ୍କ ପରିହାସରେ ଅତ୍ୟନ୍ତ କ୍ରୁଦ୍ଧ ହୋଇ ପଣ୍ଡିତ ମହାଶୟ ତାଙ୍କୁ ଉଚ୍ଚସ୍ୱରରେ ତିରସ୍କାର କରିବା ସମୟରେ ଅନ୍ୟଜଣେ ଶିକ୍ଷକ କ୍ୟାମ୍ପର ରୋଷଶାଳାରେ ଭାତ ଗାଳିବା ବେଳେ ଅସାବଧାନତା ହେତୁ ହାଣ୍ଡିଟି ତାଙ୍କ ହାତରୁ ଖସି ପଡ଼ିଲା । ଫଳରେ ତାଙ୍କର ଗୋଡ଼ରେ ଗରମ ପେଜ ପଡ଼ି ପୋଡ଼ିଗଲା । ସେ ଅତ୍ୟନ୍ତ ବ୍ୟସ୍ତ ହୋଇ ଯନ୍ତ୍ରଣାରେ ଚିତ୍କାର କଲେ । କ୍ୟାମ୍ପରେ ଉପସ୍ଥିତ ଥିବା ଅନ୍ୟ ଶିକ୍ଷକମାନେ ତାଙ୍କ ନିକଟକୁ ଦଉଡ଼ିଗଲେ । ଉଚ୍ଚସ୍ୱରରେ ଚିତ୍କାର କରୁଥିବା ପଣ୍ଡିତ ମହାଶୟ ମଧ୍ୟ ସେଠାକୁ ଦଉଡ଼ି-ଗଲେ । ଅନ୍ୟମାନେ ତାଙ୍କର ଯନ୍ତ୍ରଣା ଦୂର କରିବାର ଉପାୟ ଭାବିବାରେ ଅସ୍ଥିର । ସେତିକିବେଳେ ପଣ୍ଡିତ ମହାଶୟ ତାଙ୍କ ପାଖକୁ ଯାଇ ଯନ୍ତ୍ରଣା ଉପଶମ କଥା କିଛି ଚିନ୍ତା ନକରି ତାଙ୍କୁ ପ୍ରଶ୍ନ କଲେ ଯେ ତାଙ୍କର କି ରାଶି । ସେ ବିରକ୍ତ ହୋଇ କହିଲେ ଯେ ସେ ରାଶି ଫାଶି ଜାଣନ୍ତି ନାହିଁ । ପଣ୍ଡିତ ମହାଶୟ କହିଲେ ଯେ ରାଶି ନଜାଣି ଏ ଦଶା । ରାଶି ଜାଣିଥିଲେ ଘାତ ଚନ୍ଦ୍ରରୁ ରକ୍ଷା ପାଇବା ପାଇଁ ଆଗରୁ ସାବଧାନ ହୋଇ ପାରି-ଥାଆନ୍ତେ । ତାଙ୍କ କଥା ଶୁଣି ଅନ୍ୟମାନେ ହସିଲେ । ପଣ୍ଡିତ ମହାଶୟ ସେମିତି ରାଗି ସେଠାରୁ ଚାଲି ଆସିଲେ ।

ଏହିପରି ବହୁକଥା ତାଙ୍କଠାରୁ ଆମେମାନେ ଶୁଣିଛୁ । ତାଙ୍କଠାରୁ ବହୁ ଉପଦେଶ ପାଇଛୁ । ତାଙ୍କଠାରୁ ବହୁଭାବରେ କର୍ମର ପ୍ରେରଣା ପାଇଛୁ । ଜୀବନରେ କର୍ମ ବ୍ୟତୀତ ଅନ୍ୟ କିଛି ତାଙ୍କର ଶ୍ରେୟବସ୍ତୁ ନଥିଲା । ନିରଳସ ଭାବରେ ସେ ପଠନ ଓ ଲେଖନରେ ବ୍ୟସ୍ତ ରହୁଥିଲେ । ତାଙ୍କର ଦେହାବସାନର କେତେମାସ ପୂର୍ବେ ତାଙ୍କର ରଚିତ ପୁସ୍ତକ ଗୁଡ଼ିକର ଏକ ତାଲିକା ତାଙ୍କୁ ମାଗିଲି । ସେ ନିଜ ହାତରେ ଲେଖିଥିବା ଏକ ତାଲିକା ମୋତେ ଦେଲେ ଓ ସେଥିରେ ଆଉ କେତେଗୋଟି ନାମ ଲେଖିବାକୁ ଡାକିଦେଲେ । ସେ ଖଣ୍ଡିକ ଅତି ଯତ୍ନର ସହିତ ମୁଁ ସାଇତି ରଖିଛି । ସେ ଖଣ୍ଡିକ ତାଙ୍କର ଏକ ଅମଳିନ ସ୍ମୃତି ।

ହଠାତ୍ ଦିନେ ଖବର ପାଇଲି ଯେ ସେ ହୃଦ୍‌ରୋଗରେ ଆକ୍ରାନ୍ତ । ପଠାଣିବାବୁଙ୍କ ପାଖକୁ ଖବର ପଠାଇଲେ ମୋତେ ନେଇ ତାଙ୍କ ପାଖକୁ

ଯିବାକୁ । ଆମେ ଦୁହେଁ ଗଲୁ । ତା ପୂର୍ବରୁ ମୁଁ ହୃଦ୍‌ରୋଗରେ ଆକ୍ରାନ୍ତ ହୋଇ ସାରିଥାଏ । ତାଙ୍କ ରୋଗର ବିବରଣ ଜାଣିବା ପରେ ମୋ ତୁଳନାରେ ତାଙ୍କ ରୋଗ କିଛି ନୁହେଁ ବୋଲି ତାଙ୍କୁ ବହୁ ଭାବରେ ଆଶ୍ୱାସନା ଦେଲି । ସେ ବୋଧହୁଏ, ବୟସ ଦୃଷ୍ଟିରୁ ଜୀବନ ସୂର୍ଯ୍ୟର ଗତିକୁ ଅପରାହ୍ନର ଆକାଶରେ ନିରୀକ୍ଷଣ କରୁଥିଲେ । ତଥାପି ତାଙ୍କ ମୁହଁରେ ନୈରାଶ୍ୟର ଚିହ୍ନ ଜଣା ପଡ଼ୁନଥିଲା ।

ପୁଣି ଦିନେ ଖବର ପାଇଗଲି । ସଂଧ୍ୟାର ଛାପିଛାପିକା ଆଲୁଅରେ ସେ ମୋତେ ହଠାତ୍ ଚିହ୍ନିପାରିଲେ ନାହିଁ । ନାମ କହିଲି । ଖଟ ଉପରୁ ଓହ୍ଲାଇ ଆସି କୁଣ୍ଢେଇ ପକାଇଲେ ମୋତେ । ପାଖରେ ବସିଲି । ଥାକରୁ ଖଣ୍ଡିଏ ବହି କାଢିଲେ– 'ଘୁଅ ମୁହଁର ପତର' –ତାଙ୍କରି ଆତ୍ମ ଚରିତ । ପ୍ରଥମ ପୃଷ୍ଠାରେ ମୋ ନାମ ଲେଖିଥିଲେ । ଅକ୍ଷରର ପୂର୍ବ ସୌନ୍ଦର୍ଯ୍ୟ ଆଉ ନଥିଲା । ତଥାପି ତାଙ୍କ ହାତର ଲେଖା । ସେଇ ତାଙ୍କ ହାତରେ ଥିଲା ଶେଷଥର ପାଇଁ ମୋ ନାମ ଲେଖା । 'ଘୁଅ ମୁହଁର ପତର' ପଢିଲି– ପୁସ୍ତକର ପ୍ରତ୍ୟେକ ପୃଷ୍ଠାରେ ତାଙ୍କ ଜୀବନକୁ ତିଳେ ତିଳେ ଅନୁଭବ କଲି । ଆଜି ସେଇ ଅନୁଭୂତି ଭିତରେ ତାଙ୍କୁ ଏଠି ମୋର ସହସ୍ର ପ୍ରଣାମ । ସେଇ ପ୍ରଣାମ କରି ଆଜି ତାଙ୍କ ପାଖରେ ଭିକ୍ଷା କରୁଛି ଆଶୀର୍ବାଦ– ଐଶ୍ୱର୍ଯ୍ୟର ନୁହେଁ, କର୍ମର । ତୁମରି ପରି କର୍ମବୀର ହେବାକୁ ଆମକୁ ବଳ ଦିଅ, ସାହସ ଦିଅ ।



# ଶ୍ରୀଧର ମଉସା

ରବୀନ୍ଦ୍ର ନାରାୟଣ ମିଶ୍ର

ଅଧ୍ୟାପକ ଶ୍ରୀଧର ଦାସ, ଯାହାଙ୍କୁ ଭକ୍ତିର ସହ ମୁଁ ମଉସା ବୋଲି ସମ୍ବୋଧନ କରୁଥିଲି । ମୋର ପିଲା ଦିନରୁ ତାଙ୍କ ସହ ଚିହ୍ନା ପରିଚୟ ନଥିଲେ ବି ସେ ଜଣେ ଜଣାଶୁଣା ବ୍ୟକ୍ତି ଥିଲେ । କାରଣ ତାଙ୍କର ବ୍ୟାକରଣ ବହି ପିଲଦିନେ ପଢିଥିଲି । ତାଙ୍କ ବିଷୟରେ ମୋଟାମୋଟି ମୋର ଧାରଣା ଥିଲା ସେ ଜଣେ ସାଧାରଣ ଓଡ଼ିଆ ଅଧ୍ୟାପକ । ମୋର ଏଇ ଧାରଣା ରହିଥିଲା ୧୯୭୮ ମସିହା ପର୍ଯ୍ୟନ୍ତ– ଯେଉଁ ବର୍ଷ ଆମେ ଦେଉଳ ସାହିରେ ନୂଆ ନୂଆ ଘର ତିଆରି କରି ତାଙ୍କର ନିକଟତମ ପଡ଼ୋଶୀ ହୋଇ ରହିଲୁ । ତାଙ୍କ ଘର ଓ ଆମ ଘର ଭିତରେ କେବଳ ବ୍ୟବଧାନ ଥିଲା ହତାର କାନ୍ଥଟି । ବାପା ଆଉ ସେ ଏକାଠି ହୋଇ ଏଇ ଦେଉଳ ସାହିରେ ଗୁଣ୍ଠ ଛଅଶହ ଟଙ୍କା (ବର୍ତ୍ତମାନ ଦରରେ ଗୁଣ୍ଠ ପଚାଶ ହଜାର) ଦରରେ ଜାଗାଟି କିଣି ପରସ୍ପର ସହ ଭାଗ କରିଥିଲେ । ମଉସା ପ୍ରଥମେ ଘରକରି ରହିଥିଲେ ଏବଂ ବାପା ଘରକଲେ ୧୯୭୮ ମସିହାରେ । ଘର କରିବା ପରେ ମଉସା ଓ ବାପାଙ୍କ ମଧ୍ୟରେ ଘନିଷ୍ଠତା ବଢିଲା । ମଉସା ବାପାଙ୍କଠାରୁ ସାତବର୍ଷ ବଡ଼ ଥିଲେ । ଦୁହିଁଙ୍କ ସମ୍ପର୍କ ମଧ୍ୟରେ ଏତେ ଆନ୍ତରିକତା ଥିଲା ଯେ ଦିନ ଭିତରେ ମଉସା ଓ ବାପା ପରସ୍ପରଙ୍କ ପାଖକୁ ଅନ୍ତତଃ ଦଶବାର ଥର ଯିବା ଆସିବା କରୁଥିଲେ । ମଉସା ବେଶି ସମୟ ଆସୁଥିଲେ ଆମ ଘରକୁ । ବାପା ଦାଣ୍ଡଘରେ ବସୁଥିଲେ ଓ ତାଙ୍କ ପାଖରେ ପଡିଥିବା ଚୌକୀରେ ମଉସା ଆସି ବସି ପଡ଼ୁଥିଲେ । ପ୍ରତି ଦେଖାରେ ଦୁହିଁଙ୍କ ଭିତରେ ମୁଖ୍ୟତଃ ସାହିତ୍ୟ ଚର୍ଚ୍ଚା ହେଉଥିଲା । ଉଭୟଙ୍କ କଥୋପକଥନ ବେଶ୍ ଶିକ୍ଷଣୀୟ ହେଉଥିଲା । ସେତେବେଳକୁ ଉଭୟ ପ୍ରତ୍ୟେକ ଜୀବନରେ ପ୍ରାୟ ଚାରିଦଶନ୍ଧି ସମୟ ବିତାଇଥାନ୍ତି । ଉଭୟ

ସାଧାରଣ ସ୍ତରରୁ ଅସାଧାରଣ ସ୍ତରକୁ ଆସିଥାନ୍ତି । ଉଭୟଙ୍କର ସାହିତ୍ୟ ପ୍ରୀତି, ବାଣୀ ଆରାଧନା ଓ ବିଶେଷତଃ ସଂସ୍କୃତ ସାହିତ୍ୟ ପ୍ରତି ଗଭୀର ପ୍ରୀତି ଥାଏ । ଉଭୟ ସଂସ୍କୃତଜ୍ଞ ଓ ସଂସ୍କୃତ ସାହିତ୍ୟରେ ବେଶ୍ ପାରଦର୍ଶିତା ଲାଭ କରିଥାଆନ୍ତି । ଶ୍ରୀଧର ମଉସାଙ୍କର ଯେ ଏତେ ସଂସ୍କୃତଜ୍ଞାନ ଅଛି ମୁଁ ଏହା ପୂର୍ବରୁ ଜାଣି ନଥିଲି । ତାଙ୍କୁ ଯେ କେହି ବାହାରୁ ଦେଖିବ, ତାଙ୍କର ଜ୍ଞାନ ଗାରିମା ସମ୍ବନ୍ଧରେ ତାଙ୍କୁ ହେୟଜ୍ଞାନ କରିବା ସ୍ୱାଭାବିକ । କାରଣ ତାଙ୍କର କଥା ଭାଷାର ଭଙ୍ଗୀ, ପୋଷାକ ପରିଚ୍ଛଦର ଅନାଡ଼ମ୍ବରତା ତଥା ଆଗ୍ରରବ୍ୟବହାରରେ ନମ୍ରତା ସମସ୍ତଙ୍କୁ ଗୋଟାଏ ଭୁଲ୍ ଧାରଣାର ବଶବର୍ତ୍ତୀ କରାଇ ଦେଇଥିଲା ଯେ ସେ ଅତି ସାଧାରଣ, ସୀମିତ ଜ୍ଞାନସମ୍ପନ୍ନ ଓ ଜଣେ ସାଧାରଣ ଲୋକ । ମାତ୍ର ତାଙ୍କ ସହ ବ୍ୟକ୍ତିଗତ ସଂସ୍ପର୍ଶରେ ଆସିଲେ ଯେକେହି ଜାଣିପାରିବ ଯେ ସେ ଥିଲେ ନିଶ୍ଚିତ ଭାବରେ ଅସାଧାରଣ, ଅସୀମ ଜ୍ଞାନ ସମ୍ପଦର ଅଧିକାରୀ ଓ ଜଣେ ଅନନ୍ୟ ପୁରୁଷ ।

ଅତି ପ୍ରାଗଳ୍ଭ ଭାବରେ ସେ ଉପେନ୍ଦ୍ରଭଞ୍ଜଙ୍କଠାରୁ ଆରମ୍ଭକରି କବିବର ରାଧାନାଥଙ୍କ ପର୍ଯ୍ୟନ୍ତ ଏବଂ ଅନ୍ୟ ପକ୍ଷରେ କାଳିଦାସ ପ୍ରଭୃତି କବିଙ୍କ କାବ୍ୟକୃତିକୁ ଉଦ୍ଧାର କରି ପାରୁଥିଲେ । ମୋର ମନେଅଛି ଶ୍ରୀଜଗନ୍ନାଥ ମନ୍ଦିରର ମୁଖପାତ୍ର 'ଶ୍ରୀମନ୍ଦିର' ସହିତ ମୁଁ ଯେତେବେଳେ ସଂଶ୍ଳିଷ୍ଟ ରହି ଉକ୍ତ ପତ୍ରିକାର ସମ୍ପାଦନାରେ ମୁଖ୍ୟ ଅଂଶ ଗ୍ରହଣ କରୁଥିଲି, ସେତେବେଳେ ସେ ତାଙ୍କ ପାଖରେ ସାଇତି ରଖିଥିବା କବି ଯଦୁମଣିଙ୍କ 'ଅଶୀ–ଳା' କବିତାଟି ପ୍ରକାଶ କରିବାକୁ ମତେ ସମର୍ପଣ କରିଥିଲେ । ଏହି ଅମୂଲ୍ୟ କବିତାଟି 'ଶ୍ରୀମନ୍ଦିର'ର ୪ର୍ଥ ସଂଖ୍ୟାର ଅଣତିରିଶ ପୃଷ୍ଠାରେ ସ୍ଥାନ ପାଇଛି । ସାହିତ୍ୟର ଅମୂଲ୍ୟ କୃତିକୁ ସାଇତି ରଖିବା ତାଙ୍କର ଏକ ବ୍ରତ ଥିଲା । ଶ୍ରୀଧର ମଉସା ଉକ୍ତ କବିତାଟିକୁ ସାଇତି ରଖି ନଥିଲେ ଯଦୁମଣିଙ୍କର ଏ ଅନୁପମ କୃତି ଚିରକାଳପାଇଁ ଲୋପପାଇ ଯାଇଥାଆନ୍ତା ଏବଂ ଲୋକ ଲୋଚନକୁ ଆସି ନଥାନ୍ତା । ଏହି କବିତାରେ ଅଶୀଗୋଟି 'ଳା' ବ୍ୟବହାର ହୋଇଛି ଏବଂ କବି ଯଦୁମଣି ସ୍ୱର୍ଗୀୟ ପତ୍ନୀଙ୍କୁ ଜଗନ୍ନାଥ ଦର୍ଶନକୁ ଆଣି ଜଗନ୍ନାଥଙ୍କର ଗୁଣ୍ଡିଚାଯାତ୍ରା ଲୀଳା ଏହି କବିତାରେ ବର୍ଣ୍ଣନା କରିଛନ୍ତି ଅତି ସୁନ୍ଦର ତଥା ସାବଲୀଳ ଭଙ୍ଗୀରେ ।

ବାପା ଓ ଶ୍ରୀଧର ମଉସାଙ୍କର କଥୋପକଥନରେ ସମଗ୍ର ଓଡ଼ିଶାର ଇତିହାସ ସ୍ଥାନ ପାଇଥିଲା । ଏତେ ସୁନ୍ଦର ସୁନ୍ଦର କଥା ସେ ତାଙ୍କ ମନରେ ସାଇତି ରଖିଥିଲେ ଏବଂ ତାଙ୍କ ସ୍ୱଭାବ ସୁଲଭ ଭଙ୍ଗୀରେ ସେଗୁଡ଼ିକୁ ଏପରି ଉପସ୍ଥାପନା କରୁଥିଲେ ଯେ ଶୁଣିବାକୁ ଏହା ବେଶ ହୃଦୟଗ୍ରାହୀ ହେଉଥିଲା । ମୋର ମନେଅଛି ଯଦୁମଣିଙ୍କର ଏକ ସୁନ୍ଦର ଉପାଖ୍ୟାନ– "ଗଉଡ଼ ଗୋବର ଧନିଆ" କଥା । ଏକଦା ଯଦୁମଣି ରଜାଙ୍କର ଅନୁଗ୍ରହପ୍ରାର୍ଥୀ ହୋଇ କିଛି ପ୍ରାର୍ଥନା କରନ୍ତେ ରଜା ତାଙ୍କର ପ୍ରାର୍ଥନା ପୂରଣ ନିମିତ୍ତ ତାଙ୍କର ଏକ ପାଖଲୋକ ଜାତିରେ ଗଉଡ଼ ଗୋବର୍ଦ୍ଧନଙ୍କୁ ଆଦେଶ ଦେଇଥିଲେ । ମାତ୍ର ସମୟ ଅତିକ୍ରାନ୍ତ ହେଲେ ସୁଦ୍ଧା ଗୋବର୍ଦ୍ଧନ କବି କୁଳମଣି ଯଦୁମଣିଙ୍କ ଆକାଂକ୍ଷିତ ବାସନା ଚରିତାର୍ଥ ବାସନା ନ କରିବା ଯୋଗୁଁ ରଜାଙ୍କୁ କବି ସୁନ୍ଦର କବିତା ଶୁଣାଇଥିଲେ ।

ବିଷ ଅସକର ପିତ୍ତକୁ ନାଶର ଗରୁଡ଼ ଗୋବର ଧନିଆଁ
ମଣିମାଙ୍କ ଆଜ୍ଞା ନାଶ କରି ଦେଲା ଏଛାର ଗୋବର ଧନିଆଁ ।

ରଜା ଏଥିରେ କ୍ଷୁବ୍ଧ ହୋଇ ଗୋବର୍ଦ୍ଧନଙ୍କୁ ଦଣ୍ଡଦେବା ସଙ୍ଗେ ସଙ୍ଗେ ଯଦୁମଣିଙ୍କ ପ୍ରାର୍ଥନା ପୂର୍ଣ୍ଣ କରିଥିଲେ ।

ଶ୍ରୀଧର ମଉସାଙ୍କର ସଂସ୍କୃତ ସାହିତ୍ୟରେ ମଧ୍ୟ ଅଗାଧ ଜ୍ଞାନ ଥିଲା । ମୋର ମନେଅଛି ଥରେ ଶ୍ରୀଜଗନ୍ନାଥଙ୍କ ସମ୍ପର୍କରେ ଜଣେ ଭକ୍ତର ବାକ୍ୟ "ଜଗନ୍ନାଥ ଅନୁକୂଳ ହେଲେ ତ୍ରିଜଗତ ଅନୁକୂଳ ହୁଅନ୍ତି ଓ ଜଗନ୍ନାଥ ପ୍ରତିକୂଳ ହେଲେ ତ୍ରିଜଗତ ପ୍ରତିକୂଳ ହୁଅନ୍ତି" ଅର୍ଥାତ୍ ମୋର ଭୁଲ୍ ବାକ୍ୟକୁ ସଂଶୋଧନ କରି ସେ କହିଥିଲେ,

"ଅନୁକୂଳେ ଜଗନ୍ନାଥ ଅନୁକୂଳଂ ଜଗତ୍ରୟଂ
ପ୍ରତିକୂଳେ ଜଗନ୍ନାଥେ ପ୍ରତିକୂଳଂ ଜଗତ୍ରୟମ୍ ।"

ଶ୍ରୀଧର ମଉସା ମିତାହାରୀ, ମିତାଗ୍ରହୀ ଓ ମିତବ୍ୟୟୀ ଥିଲେ । ସେ ଜୀବନରକ୍ଷା ନିମିତ୍ତ ଆହାର, ସୌଜନ୍ୟମୂଳକ ଆଗ୍ରହ ଓ ଆବଶ୍ୟକତା ଦୃଷ୍ଟିରୁ ବ୍ୟୟ କରୁଥିଲେ । ଲୋଭବଶ ହୋଇ ଗୁଡ଼ାଏ ଖାଇବା, ଅସୌଜନ୍ୟ ଆଚରଣ ପ୍ରଦର୍ଶନ କରିବା ବା ଆଡ଼ମ୍ବରପୂର୍ଣ୍ଣ ବ୍ୟୟାଦି କରିବା ତାଙ୍କ

ଜାତକରେ ନଥିଲା । ତେଣୁ ସେ ଛାତ୍ରସମାଜ ତଥା ଜନସମାଜରେ ଅତି ଲୋକପ୍ରିୟ ଥିଲେ । ତାଙ୍କର ସୁମହତ ଆଦର୍ଶରେ ସେ ଅନେକଙ୍କୁ ପ୍ରଭାବିତ କରି ପାରୁଥିଲେ । ତାଙ୍କର ଏଇ ମହନୀୟ ଆଦର୍ଶ ଯୋଗୁଁ ସେ ନିଜର ପୁତ୍ରକନ୍ୟାମାନଙ୍କୁ ଆଦର୍ଶକରି ଗଢି ପାରିଥିଲେ । ତାଙ୍କର ତିନିଗୋଟି ପୁତ୍ରସନ୍ତାନ ଉଚ୍ଚଶିକ୍ଷିତ, ସୁପ୍ରତିଷ୍ଠିତ ଓ ସୁଗୁଣ ସମ୍ପନ୍ନ । କନ୍ୟା ମଧ୍ୟ ସୁଗୁଣ ସମ୍ପନ୍ନା ଓ ସଂସାରରେ ପ୍ରତିଷ୍ଠିତା ।

ମଉସାଙ୍କ ସ୍ୱଭାବ ଥିଲା ବାହ୍ୟାଡମ୍ବର ବିବର୍ଜିତ । କୌଣସି ଜିନିଷରେ ଦେଖେଇ ହେବା, ଆତ୍ମପ୍ରଶଂସା କରିବା ତାଙ୍କର ସ୍ୱଭାବ ବିରୁଦ୍ଧ ଥିଲା । ଏପରିକି ସେ ଲୋକଦେଖାଣିଆ ଭାବେ କେବେ କୌଣସି ମନ୍ଦିରକୁ ଯାଇ ନ ଥିଲେ । ମୁଁ ତାଙ୍କ ସଂସ୍ପର୍ଶରେ ଆସିବା ସମୟ ଭିତରେ ସେ ଥରେ ମାତ୍ର ପୁରୁଷୋତ୍ତମ କ୍ଷେତ୍ରସ୍ଥ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବାକୁ ସସ୍ତ୍ରୀକ ଯାଇଥିଲେ । ସେଦିନ ତାଙ୍କ କଥାବାର୍ତ୍ତାରୁ ଯାହା ଜାଣିଲି, ସେ ଜଗନ୍ନାଥଙ୍କୁ ଦେଖି ଅତୀବ ଆନନ୍ଦିତ ହୋଇଥିଲେ । ମୋର ଯେତେଦୂର ମନେହୁଏ ବୋଧହୁଏ ସେଇଟା ତାଙ୍କର ଶେଷଦର୍ଶନ ଥିଲା । ମାତ୍ର ତାଙ୍କର ବ୍ୟକ୍ତିଗତ ଚରିତ୍ରର ଯେ ସାମାନ୍ୟ ଆଭାସ ପାଇଛି, ସେ ଜାଣିଛି ଯେ ସେ ପ୍ରକୃତରେ ଜଣେ ସାଧୁପୁରୁଷ ଥିଲେ । କାହାରି ଅମଙ୍ଗଳ ଚିନ୍ତାକରିବା ବା କୌଣସି ଅଧର୍ମ କାମ କରିବା ତାଙ୍କର ସ୍ୱଭାବ ବିରୋଧୀ ଥିଲା । ମୁଁ ତାଙ୍କୁ ଠିକ୍‌ରୂପେ ଜାଣିଛି, ସେ କଦାପି ନାସ୍ତିକ ନଥିଲେ, ସେ ଥିଲେ ଜଣେ ନିଭୃତ ଆସ୍ତିକ ।

ମଉସାଙ୍କର ସବୁଠାରୁ ଅନୁକରଣୀୟ ଗୁଣ ଥିଲା ତାଙ୍କର ବାଣୀ-ସାଧନା । ପଢ଼ିବାକୁ ଓ ଲେଖିବାକୁ ସେ ବହୁତ ଭଲ ପାଉଥିଲେ । ନିୟମିତ ଅଧ୍ୟୟନ ତାଙ୍କର ଗୋଟାଏ ନିଶାଥିଲା କହିଲେ ଚଳେ । ବୋଧ-ହୁଏ ଦିନକୁ ଦି' କପ୍ ଚା ଛଡ଼ା ତାଙ୍କର ଆଉ କିଛି ନିଶା ନଥିଲା । ମାତ୍ର ତାଙ୍କର ଝୁଙ୍କ୍ ଥିଲା ପଢ଼ିବାରେ । ଓଡ଼ିଆ, ବଙ୍ଗଳା, ହିନ୍ଦୀ, ଇଂରାଜୀ ଓ ସଂସ୍କୃତ ଭାଷାରେ ସେ ପଢ଼ିଲେଖି ପାରୁଥିଲେ । କୌଣସି ଭଲ ଜିନିଷଟିଏ ପଢ଼ିଲେ ସେ ସୁଯୋଗ ପାଇ ଆମ୍ଭମାନଙ୍କୁ ଶୁଣାଉଥିଲେ । ତାଙ୍କ ସହିତ କଥାବାର୍ତ୍ତା ହୋଇ କଥାବାର୍ତ୍ତାର ମୋଡ଼ ଟିକିଏ ବାଗେଇ ଦେଲେ ଜ୍ଞାନ-ଭଣ୍ଡାରର ସେ ଯେଉଁସବୁ ରତ୍ନ ଚିହ୍ନାଇ ଦିଅନ୍ତି, ତାହା ଭୁଲିବାର ନୁହେଁ ।

ପରିଣତ ବୟସରେ ସେ ଦୃଷ୍ଟିଶକ୍ତି ହରାଇ ବସିଥିଲେହେଁ ପୌତ୍ର ପୌତ୍ରୀମାନଙ୍କୁ ପଢ଼ିବାକୁ କହି ସେ ମନୋଯୋଗ ସହ ଶୁଣୁଥିଲେ । ଶେଷ ଜୀବନରେ ଦୃଷ୍ଟିଶକ୍ତି ହରାଇବା ଯୋଗୁଁ ପଢ଼ାପଢ଼ି ବା ଲେଖାଲେଖି ନ କରି ପାରିବା ହେତୁ ସେ ମର୍ମନ୍ତୁଦ ଦୁଃଖ ଅନୁଭବ କରୁଥିଲେ । ପ୍ରକୃତରେ ସେ ବାଗ୍‌ଦେବୀଙ୍କର ଥିଲେ ଜଣେ ଏକନିଷ୍ଠ ସେବକ ।

୧୯୮୮ ମସିହାରେ ତାଙ୍କ ମୃତ୍ୟୁରେ ଓଡ଼ିଶା ଜଣେ ସୁସାହିତ୍ୟିକ ସୁପ୍ରତିଷ୍ଠିତ ଅଧ୍ୟାପକ, ସ୍ୱନାମଧନ୍ୟ ବୈୟାକରଣ, ସୁପୁରୁଷ ଏବଂ ସର୍ବୋପରି ଜଣେ ସୁଗୁଣସମ୍ପନ୍ନ ସନ୍ତାନଙ୍କୁ ହରାଇଲା । ତାଙ୍କ ସ୍ଥାନ ସହଜରେ ପୂରଣ ହେବନି । ମାତ୍ର ତାଙ୍କର ଆଦର୍ଶରେ ଆମେ ଅନୁପ୍ରାଣିତ ହେଲେ ଭବିଷ୍ୟତ ବଂଶଧର ଅନ୍ତତଃ ତାଙ୍କର ଦାୟାଦ ବୋଲି ଗର୍ବ କରିବ ।

ମୋର ଏହି କ୍ଷୁଦ୍ର ଲେଖା ନରିଆରେ ମୁଁ ସେଇ ମହାନ ଆତ୍ମାକୁ ଶ୍ରଦ୍ଧାଞ୍ଜଳି ଜଣାଉଛି ।



# ସ୍ୱର୍ଗତ ଅଧ୍ୟାପକ ଶ୍ରୀଧର ଦାସ

ଅଧ୍ୟାପକ ରଙ୍ଗାଧର ଷଡ଼ଙ୍ଗୀ

ଏ ହେଉଛି ୧୯୫୭ ମସିହାର କଥା । ମୁଁ ସେତେବେଳକୁ ବନାରସ ବିଶ୍ୱବିଦ୍ୟାଳୟରୁ ଫେରିଥାଏ । ୧୯୫୪ ରେ ସଂସ୍କୃତରେ ଏମ୍. ଏ ପାଶ୍ ପରେ ପିଏଚ୍ ଡ଼ି ପାଇଁ ଥେସିସ୍ ମଧ୍ୟ ଦାଖଲ କରି ସାରିଥାଏ । ଅଧ୍ୟାପକ ଚାକିରୀଟିଏ ପାଇଁ ଅପେକ୍ଷାରେ ରହିଥାଏ । ସେତେବେଳେ କଲେଜ ସଂଖ୍ୟା ବହୁତ କମ୍ । ସଂସ୍କୃତରେ ଏମ୍. ଏ ପଢ଼ିବାକୁ ଓଡ଼ିଶା ବାହାରକୁ ଯିବାକୁ ପଡୁଥିଲା । ଚାକିରୀ ପରିସ୍ଥିତି ବୁଝିବା ପାଇଁ ଡକ୍ଟର କରୁଣାକର କରଙ୍କୁ ଦେଖା କଲି । ସେ ଥିଲେ ଓଡ଼ିଆ ଓ ସଂସ୍କୃତ ବିଭାଗୀୟ ମୁଖ୍ୟ, ରେଭେନ୍‌ସା କଲେଜରେ । ସେ ମୋତେ କହିଲେ–"ଖାଲି ସଂସ୍କୃତ ଯୋଗ୍ୟତାରେ ଚାକିରୀ ମିଳିବା କଷ୍ଟ ; ତୁମେ ଓଡ଼ିଆରେ ଏମ୍. ଏ. ପାଶ୍ କର । ଡବଲ୍ ଏମ୍. ଏ. ହେଲେ ଓଡ଼ିଆରେ ଅଧ୍ୟାପକ ହୋଇଯିବ ।" ସଂସ୍କୃତ ବିଭାଗରେ ଚାକିରୀରେ ଏପରି ସ୍ଥିତି ଜାଣି ମନ ଉଣା ହୋଇଗଲା । ମନେ ମନେ ସ୍ଥିର କରିନେଲି – ଯାହା ହେଲେ ବି ଆଉ ଥରେ ଏମ୍. ଏ. ଦେବି ନାହିଁ । ଏହିପରି ଅବସ୍ଥାରେ କ୍ରାଇଷ୍ଟ କଲେଜରେ ସଂସ୍କୃତ ଅଧ୍ୟାପକ ପାଇଁ କାଗଜରେ ବିଜ୍ଞାପନ ବାହାରିଲା, ମୁଁ ଦରଖାସ୍ତ କଲି । ଦିନେ ରେଭେନ୍‌ସା କଲେଜକୁ ଡଃ ତ୍ରିପାଠୀଙ୍କୁ ଭେଟିବାକୁ ଯାଉ ଯାଉ ଡଃ ବଂଶୀଧର ମହାନ୍ତିଙ୍କ ସହ ଭେଟ ହେଲା । ତାଙ୍କ ପରାମର୍ଶ କ୍ରମେ ମୁଁ ଅଧ୍ୟାପକ ଶ୍ରୀଧର ବାବୁଙ୍କୁ ଭେଟିବାକୁ କ୍ରାଇଷ୍ଟ କଲେଜକୁ ଆସିଲି । ତାଙ୍କଠାରୁ ବୁଝିଲି ଯେ ମୋର ଦରଖାସ୍ତ ଆସି ଯାଇଛି । ମୋ ଛଡ଼ା ଆଉ ଜଣେ କେବଳ ଦରଖାସ୍ତ କରିଥିଲେ । ସେ ହେଉଛନ୍ତି ଶ୍ରୀ ରାମାନୁଜ ଦାସ । ସେ ସଂସ୍କୃତ ଓ ଓଡ଼ିଆରେ ଡବଲ୍ ଏମ୍. ଏ । ସେଉ ଦିନ ଅଧ୍ୟାପକ ଶ୍ରୀଧର ଦାସଙ୍କ ସହ ପ୍ରାୟ ଏକଘଣ୍ଟା ଆଳାପ ମଧ୍ୟରେ

ତାଙ୍କ ଜ୍ଞାନ ପରିମାରେ ଖୁବ୍ ମୁଗ୍ଧ ହେଲି । ସେତେବେଳେ ଓଡ଼ିଆ ସଂସ୍କୃତ ମିଶି ଗୋଟାଏ ବିଭାଗ ଥାଏ । ମୁଁ ଦେଖିଲି ଶ୍ରୀଧରବାବୁ ମୁଖ୍ୟତଃ ଓଡ଼ିଆରେ ଅଧ୍ୟାପକ ହେଲେ ମଧ୍ୟ ସଂସ୍କୃତରେ ବେଶ୍ ଅଧୀତ-ବିଦ୍ୟ । ସେ ନୈଷଧ କାବ୍ୟରୁ ପ୍ରାୟ ୨୦ । ୩୦ ଯାଏଁ ଶ୍ଳୋକ ଆବୃତ୍ତି କରି ମୋତେ ସେଦିନ ଶୁଣାଇ ଥିଲେ ।

ସେତେବେଳେ ଖ୍ରାଇଷ୍ଟ କଲେଜରେ ସଂସ୍କୃତ ବିଭାଗରେ ଅଧ୍ୟାପକ ଥିଲେ ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ, ଏବେ ସ୍ୱର୍ଗତ । ସେ ଜଣେ ଅସାଧାରଣ ପ୍ରତିଭା ସମ୍ପନ୍ନ ପଣ୍ଡିତ ଥିଲେ । ଶ୍ରୀଧର ଦାସ ମଧ୍ୟ କମ୍ ନଥିଲେ । ଖ୍ରାଇଷ୍ଟ କଲେଜ ଷ୍ଟାଫ୍ ବିଷୟରେ ସେହିଦିନୁ ମୋର ଗୋଟିଏ ଉଜ୍ଜ୍ୱଳ ଧାରଣା ଏପର୍ଯ୍ୟନ୍ତ ରହିଯାଇଛି । ସେତେବେଳକୁ ମୁଁ ସ୍ୱନାମଧନ୍ୟ ଅଧ୍ୟାପକ ପଠାଣି ପଟ୍ଟନାୟକଙ୍କୁ ଜାଣି ନଥାଏ । ଶ୍ରୀଧର ବାବୁ ମୋତେ କହିଲେ–"ଆମର ମାସକ ଭିତରେ ଆପଣଙ୍କ ପାଖକୁ ଚିଠି ଯିବ । ଆପଣ ଇଣ୍ଟରଭିଉକୁ ଆସିବେ ।" ମାସେ ଦୁଇମାସ ବିତିଗଲେ ମଧ୍ୟ କିଛି ଚିଠି ପତ୍ର ଆସିଲା ନାହିଁ, ହଠାତ୍ ଖଣ୍ଡିଏ ପୋଷ୍ଟକାର୍ଡ଼ରେ ଶ୍ରୀଧର ଦାସଙ୍କ ଦସ୍ତଖତ ଥାଇ ଇଣ୍ଟରଭିଉ ପାଇଁ ଡାକରା ଆସିଲା । ସେଥିରେ ତାଙ୍କ ଓଡ଼ିଆ ହସ୍ତାକ୍ଷର ମୋତେ ଚମତ୍କୃତ କରିଥିଲା ।

ଇଣ୍ଟର୍‌ଭିଉ ଦିନ ମୁଁ ଏକୁଟିଆ ଆସିଥିଲି । ଶ୍ରୀ ରାମାନୁଜ ଦାସ ଆସି ପାରି ନଥିଲେ । ମୋତେ ପ୍ରିନ୍‌ସିପାଲ ବ୍ରଜାନନ୍ଦ ମହାନ୍ତି ମୋର ସବୁ ସାର୍ଟିଫିକେଟ ମାଗିଲେ । ସାର୍ଟିଫିକେଟ୍ ଦେଖିସାରିଲା ପରେ କହିଲେ– "All right, carry on from tomorrow." ତା ପର ଦିନ ଠାରୁ ଖ୍ରାଇଷ୍ଟ କଲେଜରେ ଅଧ୍ୟାପକ ହେଲି । ସେତେବେଳେ ପଠାଣିବାବୁ ଓଡ଼ିଆରେ ଥାନ୍ତି । ସେ ପ୍ରଥମ ଦିନ ତାଙ୍କ ରଚିତ 'ଓଡ଼ିଆ ସାହିତ୍ୟର ଇତିହାସ' ବହି ଖଣ୍ଡିଏ ମୋତେ ଉପହାର ଦେଇଥିଲେ । ବନମାଳୀ ମିଶ୍ରେ ମଧ୍ୟ ସେତେବେଳକୁ ଓଡ଼ିଆରେ ଅଧ୍ୟାପକ ଥାନ୍ତି । ମୁଁ ଓଡ଼ିଆ ଓ ସଂସ୍କୃତ ଉଭୟ ଶ୍ରେଣୀରେ ପାଠ ପଢାଉ ଥାଏ ।

ଶ୍ରୀଧର ବାବୁ ଥିଲେ ଆମର ମୁଖ୍ୟ । ତାଙ୍କ ତଳେ କାମ କରିବାରେ ମୁଁ ବେଶ୍ ଆନନ୍ଦ ଲାଭ କରିଛି । ଅଧ୍ୟାପକ ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ

ଓଡ଼ିଆ ଜ୍ଞାନକୋଷ ସମ୍ପାଦକର କାର୍ଯ୍ୟରେ ଜନୈକ ସମ୍ପାଦକ ରୂପେ ମନୋନୀତ ହୋଇଯିବା ପରେ ତାଙ୍କ ସ୍ଥାନରେ ମୋତେ ରହିବାର ସୁଯୋଗ ମିଳିଥିଲା । ଅଧ୍ୟାପକ ଶ୍ରୀଧର ଦାସଙ୍କ ସହ କାର୍ଯ୍ୟ କରିବା ପରେ ତାଙ୍କୁ ଆହୁରି ନିକଟତର ଭବରେ ଜାଣି ପାରିଲି । ଦିନେ ତାଙ୍କ ପୁତ୍ର ଶ୍ରୀ ଜଗନ୍ନାଥ ପ୍ରସାଦ ଦାସ ( ସେତେବେଳକୁ I.A.S ହୋଇ ସାରିଥିଲେ ) ଶ୍ରୀଧର ବାବୁଙ୍କ ପାଖକୁ ଆସି ଥାଆନ୍ତି । କଲେଜରେ ଶେଷ ପିରିଅଡ୍ ସରି ଯାଇଥାଏ । ସେଦିନ ମୁଁ ଜାଣିଲି ସେ ହେଉଛନ୍ତି ଶ୍ରୀଧର ବାବୁଙ୍କ ପୁଅ । ତାଙ୍କୁ ସେ ଜଗନ ବୋଲି ଡାକୁଥାନ୍ତି । ଶ୍ରୀଧରବାବୁଙ୍କ ପ୍ରତିଭା ଜଗନଙ୍କଠାରେ ପ୍ରକଟିତ ହେବା ସ୍ୱାଭାବିକ । ସେଥିପାଇଁ ସେ କେବଳ ଜଣେ ଦକ୍ଷ ପ୍ରଶାସକ ନୁହଁନ୍ତି, ଜଣେ ସୁପରିଚିତ କବି, ଗଳ୍ପକାର ଓ ଚିତ୍ରଶିଳ୍ପୀ ।

ଶ୍ରୀଧରଦାସ ପ୍ରାଚୀନ, ନବୀନ ସବୁ କବିଙ୍କ ସାହିତ୍ୟ ବଡ଼ ପାଣ୍ଡିତ୍ୟ ଭବେ ପଢ଼ାଇ ପାରନ୍ତି । କେବେ କେବେ କୌଣସି ଶବ୍ଦର ବ୍ୟୁତ୍ପତ୍ତି ବିଷୟରେ ମଧ୍ୟ ମୋତେ ପଚାରନ୍ତି । ଏଥିରୁ ତାଙ୍କ ଜ୍ଞାନ ପିପାସା ଓ ନିରଭିମାନତା ଜଣା ପଡ଼ିଥାଏ । ଆଧୁନିକ ଓଡ଼ିଆ ସାହିତ୍ୟରେ ମଧ୍ୟ ତାଙ୍କ ସମାଲୋଚନା ଦୃଷ୍ଟିଭଙ୍ଗୀ ଉତ୍କୃଷ୍ଟ । ସାହିତ୍ୟର ବିଭିନ୍ନ ଦିଗ୍‌ବଳୟରେ ତାଙ୍କର ସଫଳ ଦୃଷ୍ଟିସଂଗ୍ରର ପରିଦୃଷ୍ଟ ହୁଏ । ସେ ଅନେକ ଇଂରଜୀ ଗଳ୍ପ, ଉପନ୍ୟାସକୁ ଓଡ଼ିଆରେ ସରଳଭଷାରେ ଅନୁବାଦ କରିଛନ୍ତି । ସଂସ୍କୃତ ସାହିତ୍ୟରୁ ମଧ୍ୟ କେତେ ଅନୁବାଦ କରିଛନ୍ତି । ସେ ଓଡ଼ିଆ ବିଭଗର ମୁଖ୍ୟ ଅଧ୍ୟାପକ ଭବେ ଯେତେ ପରିଚିତ ନୁହଁନ୍ତି ତା'ଠାରୁ ଅଧିକ ପରିଚିତ 'ସର୍ବସାର ବ୍ୟାକରଣ'ର ଲେଖକ ଭବେ । ତାଙ୍କସଙ୍ଗେ ଲିଜର୍ ୧୫ ମିନିଟ୍‌ରେ ମୁଁ ବହୁବାର ଚା' ପିଇବାକୁ ଯାଇଛି । ଚା' ପିଇଲାବେଳେ ସେ ବହୁତ ମଉଜିଆ କଥା କହି ଆନନ୍ଦ ଦିଅନ୍ତି । କାବ୍ୟ ରସିକ ଭବେ ସେ ବୟସର ବ୍ୟବଧାନକୁ ଭୁଲିଯାନ୍ତି ।

ଆଉ ଗୋଟିଏ କଥା, ସେ କଲେଜରେ ଷ୍ଟାଫ୍‌ମିଟିଙ୍ଗ୍‌ରେ ସବୁବେଳେ ଇଂରଜୀରେ କହିଥାନ୍ତି । ଇଂରଜୀ ଭଷା ଉପରେ ତାଙ୍କର ବେଶ୍ ଦଖଲ ଥିବାର ତାଙ୍କ ସହକର୍ମୀମାନେ ଜାଣନ୍ତି । କଲେଜ ଅଫିସରେ ସବୁ ଗୁରୁତ୍ୱ-ପୂର୍ଣ୍ଣ draft ଶ୍ରୀଧରବାବୁ କରିଥାନ୍ତି । ପ୍ରିନ୍‌ସିପାଲ ବ୍ରହ୍ମାନନ୍ଦ ମହାନ୍ତି ସବୁ

କଥାରେ ଶ୍ରୀଧରବାବୁଙ୍କ ପରାମର୍ଶ ଲୋଡ଼ନ୍ତି । ପ୍ରକୃତ ପକ୍ଷରେ ଶ୍ରୀଧରବାବୁ ପ୍ରିନ୍‌ସିପାଲ ଥିଲେ କହିଲେ ଅତ୍ୟୁକ୍ତି ହେବନାହିଁ ।

ସେତେବେଳେ ସଂସ୍କୃତରେ ବି. ଏ. ଶ୍ରେଣୀ ନଥିଲା । ସଂସ୍କୃତରେ ଟିଉଟୋରିଆଲ୍‌କୁ ମିଶାଇ ସର୍ବମୋଟ ୧୦ ଟି କ୍ଲାସ୍‌ଥିଲା । ତେଣୁ ମୋତେ ଓଡ଼ିଆରେ ୧୬ଟା କ୍ଲାସ ନେବାକୁ ପଡ଼ୁଥିଲା ଏବଂ ଚାକିରୀରେ ନିରାପତ୍ତା ଦୃଷ୍ଟିରୁ ଶ୍ରୀଧରବାବୁ ମୋତେ ବାରମ୍ବାର ଓଡ଼ିଆ ଏମ୍. ଏ. ପାଶ୍ କରିବାକୁ ପ୍ରବର୍ତ୍ତାଉଥାନ୍ତି । ସେ କଲେଜରୁ ଅବସର ନେଲା ପରେ ମଧ୍ୟ ପୁସ୍ତକ ପ୍ରଣୟନ ଅଭ୍ୟାସ ଛାଡ଼ି ନଥିଲେ । ତାଙ୍କର କର୍ମଠତା, ଜ୍ଞାନ-ପିପାସା, ଛାତ୍ରବତ୍ସଳତା, ବାଗ୍ମିତା, କାର୍ଯ୍ୟଦକ୍ଷତା, ମିଷ୍ଟାଳାପ ଓ ରସଗ୍ରାହିତା ଆଦି ଗୁଣ ମୋ ପାଇଁ ସର୍ବଦା ଅବିସ୍ମରଣୀୟ ।

ଶୁଣିଛି, ଜଣେ ମେଧାବୀ ଛାତ୍ରଭାବେ ସେ ବିହାର-ଓଡ଼ିଶା ସରକାରଙ୍କ ଛାତ୍ରବୃତ୍ତି ପାଇଥିଲେ । ମାଟ୍ରିକ୍ ପରୀକ୍ଷାରେ ଅତି କୃତିତ୍ୱର ସହ ସେ ଉତ୍ତୀର୍ଣ୍ଣ ହୋଇଥିଲେ ।

ଜୀବନର ଶେଷ ନିଃଶ୍ୱାସ ପର୍ଯ୍ୟନ୍ତ ବାଣୀ ଆରାଧନାରୁ ସେ ନିବୃତ୍ତ ନଥିଲେ । ଅଧ୍ୟୟନ—ଅଧ୍ୟାପନା ଥିଲା ତାଙ୍କ ଏକମାତ୍ର ଆନନ୍ଦ । ତାଙ୍କଭଳି ମହାନ୍ ଆତ୍ମାକୁ ଏତିକି ମୋର ସ୍ମୃତି-ଅର୍ଘ୍ୟ ।



# ସାର୍

## ଅଧ୍ୟାପକ ବଭୁତି ପଟ୍ଟନାୟକ

ସାର୍‌ଙ୍କ କଥା ଭାବିଲେ ହଠାତ୍ "ସର୍ବସାର ବ୍ୟାକରଣ" କଥା ମନେ ପଡ଼ିଥାଏ ଏବଂ ବ୍ୟାକରଣ ଅଜ୍ଞତା-ଜନିତ ଭୟ ଜ୍ୱରର ଉତ୍ତାପ ଭଳି ମୋର ଚେତନାକୁ ଗ୍ରାସ କରିଥାଏ ।

ସେଥିପାଇଁ ସେ ଦିନ ଗୁଡ଼ିକରେ ଟିଉଟୋରିଆଲ କ୍ଲାସରେ ମୁଁ ଅପେକ୍ଷା କରିଥାଏ ସାର୍ ଅନ୍ୟମାନଙ୍କ ଖାତା ସଂଶୋଧନ କରୁ କରୁ କିପରି ପିରିୟଡ୍ ଶେଷର ଘଣ୍ଟା ବାଜି ଯିବ ଏବଂ ମୋ ଖାତା ଆଉ ଦେଖାହେବ ନାହିଁ କି ଲେଖାରେ ବ୍ୟାକରଣ ଗତ ତ୍ରୁଟି ଯୋଗୁଁ ଅନ୍ୟ ମାନଙ୍କ ସାମ୍ନାରେ ମତେ ଅପଦସ୍ଥ ହେବାକୁ ପଡ଼ିବ ନାହିଁ ।

ସାର୍, ଅର୍ଥାତ୍ ଅଧ୍ୟାପକ ଶ୍ରୀଧର ଦାସ, ନିବିଷ୍ଟ ମନରେ ଅନ୍ୟ ମାନଙ୍କ ଟିଉଟୋରିଆଲ ଖାତାରେ ଗାର ଟାଣି ଚାଲିଥାଆନ୍ତି । ମଝିରେ ମଝିରେ ପାନ ବଟାରୁ ଖଣ୍ଡେ ଖଣ୍ଡେ ଖିଲିପାନ ବାହାର କରି କଳରେ ଢାକି ଦେଉଥାନ୍ତି ଏବଂ ଚଷମା କାଚର ଅନ୍ତରାଳରୁ ଦୃଷ୍ଟି ଟେକି ମୋ ଆଡ଼କୁ ଚାହିଁ ଦେଲେ, ମୋର ରକ୍ତ ଶୁଖି ଯାଉଥାଏ ।

ଖ୍ରୀଷ୍ଟ କଲେଜରେ ଥାଇ, ଏ, ପଢ଼ୁଥିଲା ବେଳେ ମଧ୍ୟ ମୋର କିଛି କିଛି ଗଳ୍ପ କବିତା ଝଙ୍କାର, ଡଗର, ଆସନ୍ତା କାଲି ଇତ୍ୟାଦି ପତ୍ର ପତ୍ରିକାରେ ପ୍ରକାଶିତ ହୋଇ ମତେ ଲେଖକଙ୍କର ସ୍ୱୀକୃତି ଆଣି ଦେଇ ଥାଏ । ସଂସ୍କୃତ ବ୍ୟାକରଣର ନୀତି ନିୟମ କଡ଼ା କଡ଼ି ଭାବରେ ମାନି ଚଳିଲେ ଆଧୁନିକ ପାଠକର ଚେତନାରେ ଚମକ ସୃଷ୍ଟି କଲାଭଳି ବାକ୍ୟ ଗଠନ ଓ ନୂତନ ଅର୍ଥ ଚୟନ କରିବା ସମ୍ଭବ ହେବ ନାହିଁ ବୋଲି ମୋର

ସେତେବେଳେ ଏକ ପ୍ରକାର ଧାରଣା ବଦ୍ଧମୂଳ ହୋଇଥାଏ । ତେଣୁ କର୍ତ୍ତା କର୍ମ କ୍ରିୟା ମାନଙ୍କୁ ବାକ୍ୟ ମାନଙ୍କରେ ଯେ କୌଣସି ସ୍ଥାନରେ ବସାଇବା କିମ୍ବା ବାଦ ଦେବା – ମୋର ପ୍ରାୟ ଏକପ୍ରକାର ନିଶା ହୋଇ ଯାଇଥିଲା ।

ସେଥିପାଇଁ ସାର୍‌ଙ୍କ ପାଖରୁ ମତେ ଅନେକ ସମୟରେ ଗାଳି ଶୁଣିବାକୁ ପଡୁଥିଲା ।

ସାର୍ ସେତେବେଳେ ଆମକୁ 'ରସକଲ୍ଲୋଳ' ପଢାଉ ଥିଲେ ଏବଂ ପ୍ରତ୍ୟେକ ପଦରେ ଥିବା ଅଳଙ୍କାର, ବ୍ୟବହୃତ ଶବ୍ଦର ଉତ୍ପତ୍ତି ସଂପର୍କରେ ଏତେ ବେଶି ଗୁରୁତ୍ୱ ଦେଇଥିଲେ ଯେ ବାକ୍ୟରେ ନିୟୋଜିତ ରସଧାର ପ୍ରାୟ ଶୁଷ୍କ ମନେ ହୋଇଥିଲା ।

କିନ୍ତୁ ତାଙ୍କର ପଢ଼ାଇବାର ଭଙ୍ଗୀ; ବୁଝାଇବାର ଠାଣିରେ ଏପରି ମୌଳିକତା ଥିଲା ଯେ, କ୍ଲାସରେ ଅନ୍ୟମନସ୍କ ହେବା ପ୍ରାୟ ଏକ ପ୍ରକାର ଅସମ୍ଭବ ବ୍ୟାପାର ଥିଲା । ସେ ପ୍ରାୟ କ୍ଲାସର ଅଧିକାଂଶ ଛାତ୍ରଙ୍କୁ ବ୍ୟକ୍ତିଗତ ଭାବରେ ଚିହ୍ନି ରଖିଥିଲେ । ମଝିରେ ମଝିରେ ବୁଝି ପାରୁଛ କି ନାହିଁ ବୋଲି ନାମଧରି ପଚାରି ଦେଲେ ଅନ୍ୟମନସ୍କ ଛାତ୍ରର ଛାତିରୁ ଅତଡ଼ା ଖସି ପଡ଼ୁଥିଲା ।

ସେ ସବୁ ଦିନଥିଲା ସେମିତି ।

ଛାତ୍ର ଓ ଅଧ୍ୟାପକମାନଙ୍କ ମଧ୍ୟରେ ଏକ ପ୍ରକାର ଘନୀଭୂତ ଆତ୍ମୀୟତା ଥିଲା । ଆଜି ପରି ସେଦିନ ଖ୍ରୀଷ୍ଟ କଲେଜ ଏଭଳି କୋଳାହଳ-ମୟ ନଥିଲା । ଆମ୍ରକୁଞ୍ଜ ପରିବେଷ୍ଟିତ ସେଇ ଛାୟାଶୀତଳ ପରିବେଶରେ ପଣ୍ଡିତ ବାନାମ୍ବର ଆଚାର୍ଯ୍ୟଙ୍କ ପାଖରେ 'ବିଦଗ୍ଧ ଚିନ୍ତାମଣି' ଆଉ ସାର୍‌ଙ୍କ ପାଖରେ "ରସକଲ୍ଲୋଳ" ପଢ଼ିଲା ବେଳେ ମଧ୍ୟଯୁଗୀୟ ଗୌଡ଼ୀୟ ବୈଷ୍ଣବ କାବ୍ୟର ରହସ୍ୟମୟ ଜଗତ ଧୀରେ ଧୀରେ ଆମ ଆଖି ଆଗରେ ବିକଚ ଶତଦଳ ଭଳି ଉନ୍ମୋଚିତ ହୋଇ ଯାଉଥିଲା ।

ସାର୍ କଲେଜରେ ଥିଲେ ମୋର ଓଡ଼ିଆ ସାହିତ୍ୟର ଅଧ୍ୟାପକ, ବିଭାଗୀୟ-ମୁଖ୍ୟ । କିନ୍ତୁ ସ୍କୁଲ ଜୀବନରେ ଚାରିବର୍ଷ ଧରି ଥିଲେ ମୋର ହେଡ୍‌ମାଷ୍ଟର ।

ସ୍କୁଲର ନାମ ଶ୍ରୀକୃଷ୍ଣ ଏକାଡେମୀ । ଜଗତ୍‌ସିଂହପୁର ।

ଚତୁର୍ଥ ଶ୍ରେଣୀରୁ–ସପ୍ତମ ଶ୍ରେଣୀ; ଏଇ ଚାରିବର୍ଷ ମୁଁ ସେଠାରେ ପଢୁଥିଲି ବେଳେ ସେ ଥିଲେ ହେଡ୍‌ମାଷ୍ଟର । ତଳ ଶ୍ରେଣୀର ଛାତ୍ରମାନଙ୍କ ସହିତ ହେଡ୍‌ମାଷ୍ଟର୍‌ଙ୍କର କିଛି ସଂପର୍କ ନରହିବାର କଥା ।

କେବଳ ଗୋଟିଏ କଥାରେ ଆମେ ଯାଇଥିଲୁ ସାର୍‌ଙ୍କ ପାଖକୁ ।

ଶ୍ରେଣୀରେ କୌଣସି କାରଣରୁ ଅନୁପସ୍ଥିତ ରହିଲେ ଦିନ ପିଛା ଅଣାଏଁ ଲେଖା ହିସାବ କରି ଦରମା ସହିତ ଜୋରିମନା ଦେବାକୁ ହେଉଥିଲା । ଏଇ ଅନୁପସ୍ଥିତି ଜୋରିମାନା ଆଜି କାଲି ସ୍କୁଲରେ ଆଦାୟ ହେଉଛି କି ନାହିଁ ମତେ ଜଣା ନାହିଁ– କିନ୍ତୁ ଆମବେଳେ ସ୍କୁଲରେ ଛାତ୍ରର ଅନୁପସ୍ଥିତିକୁ ଏକ ସାମାନ୍ୟ ଘଟଣା ବୋଲି ମନେ କରାଯାଉ ନଥିଲା । ସ୍କୁଲରେ ବିଳମ୍ବରେ ପହଞ୍ଚିଲେ ଏଲ, ପି, ବା ଲେଟ୍ ପ୍ରେଜେଣ୍ଟ୍ ଜୋରିମାନା ମଧ୍ୟ ଦେବାକୁ ହେଉଥିଲା ।

ଏ ଜୋରିମାନା ମାଫ୍ କରିବାର କ୍ଷମତା ଥିଲା କେବଳ ହେଡ୍‌ମାଷ୍ଟଙ୍କର ।

ଅନୁପସ୍ଥିତ ଛୁଟି ମଞ୍ଜୁର କରିବା ପାଇଁ ଦରଖାସ୍ତ ଧରି ହେଡ୍‌ମାଷ୍ଟଙ୍କ ରୁମ୍‌ରେ ପ୍ରବେଶ କରୁଥିବା ବେଳେ ଆମର ଛାତି ଦୁକ୍ ଦୁକ୍ ହେଉଥିଲା ।

ସାର୍ ଖୁବ୍ କାର୍ଯ୍ୟବ୍ୟସ୍ତ ଥିବାବେଳେ ଦରଖାସ୍ତ ନେଇ ଯିବା ପାଇଁ ଆମେ ସୁଯୋଗ ଖୋଜୁଥିଲୁ । କାରଣ ଛୁଟି ନେବାର କାରଣ ଓ ତାର ସତ୍ୟାସତ୍ୟ କଥା ନ ପଚାରି ସେ "Granted" ବୋଲି ଲେଖି ତଳେ 'S. Das.' ଦସ୍ତଖତ କରି ଦେଉଥିଲେ । ଖାଲି ବସିଥିବା କିମ୍ବା ବହି ପଢୁଥିବା ବେଳେ ଗଲେ ନାନା ପ୍ରଶ୍ନର ସମ୍ମୁଖୀନ ହେବାକୁ ପଡୁଥିଲା ।

ଆଜି ମନେ ପଡୁଛି ଥରେ ଜ୍ୱରରେ ପଡ଼ି ସାତଦିନ ସ୍କୁଲ ଯାଇ ନଥିଲି । ଛୁଟି ଦରଖାସ୍ତ ମଂଜୁର କରିବା ପାଇଁ ପହଞ୍ଚିବା ମାତ୍ରେ ସାର୍ ଦରଖସ୍ତ ଉପରେ ଆଖି ବୁଲାଇ ନେଲେ ।

କ୍ଲାସ୍ ଟିଚର ମାଗୁଣି ବାବୁ ଦରଖାସ୍ତ ଉପରେ "ରେକମେଣ୍ଡେଡ୍" ବୋଲି ନଲେଖି, 'ଫରଓ୍ୱାର୍ଡ' କରି ଦେଇଥିଲେ । ମୁଁ ଷଷ୍ଠ ଶ୍ରେଣୀର

ଛାତ୍ର । 'ରେକମେଣ୍ଡେସନ୍' ଆଉ 'ଫରଓ୍ୱାର୍ଡ' ଶବ୍ଦ ଦୁଇଟି ମଧ୍ୟରେ ସୂକ୍ଷ୍ମ ପାର୍ଥକ୍ୟ ମତେ ଜଣା ନଥିଲା ।

'ଫରଓ୍ୱାର୍ଡ' ବୋଲି ଲେଖା ହୋଇଥିବା ଦେଖି ସାର୍ ପଚାରିଲେ– "ତମକୁ ଯେ ଜ୍ୱର ହୋଇଥିଲା– ଏକଥା ସତ୍ୟ ବୋଲି ମୁଁ ଜାଣିବି କିପରି ?"

ସାର୍‌ଙ୍କୁ କଣ କହି ମୁଁ ସନ୍ତୁଷ୍ଟ କରିପାରିବି, ମତେ ଜଣା ନଥିଲା ।

ହଠାତ୍ ମୋ ପାଟିରୁ ବାହାରି ପଡ଼ିଥିଲା–

–ସାର୍ ! ମୁଁ ଜଣେ ସ୍କୁଲ ଶିକ୍ଷକଙ୍କ ପୁଅ । ମତେ ମିଛ କିପରି କହିବାକୁ ହୁଏ ଜଣା ନାହିଁ । ମୁଁ ସତ କହୁଛି– ମତେ ଜ୍ୱର ହୋଇଥିଲା–

ବାସ୍, ସେଇ ପଦିଏ କଥା । ସାର୍‌ଙ୍କ ମୁହଁରେ ଫୁଟି ଉଠିଥିଲା ପରି ତୃପ୍ତିର ହସ ।

ମତେ ଆଉ ଦ୍ୱିତୀୟ ପ୍ରଶ୍ନ ନପଚାରି ସେ ଛୁଟି ମଂଜୁର କରି ଦେଇଥିଲେ ଏବଂ ବାପାଙ୍କ ବିଷୟରେ ଟିକିନିଖି ଖବର ବୁଝି ବାପାଙ୍କୁ ତାଙ୍କ ସହିତ ଦେଖା କରିବାକୁ କହିଥିଲେ ।

ବାପା ହେଡ଼ମାଷ୍ଟର୍‌ଙ୍କୁ ଭେଟିଥିଲେ କି ନାହିଁ ମୋର ମନେ ପଡ଼ୁ ନାହିଁ; କିନ୍ତୁ ମୋର ମନେଅଛି ସେହି ବର୍ଷ ମୋ ଦରମା ଅଧା ଫ୍ରି ହୋଇ ଯାଇଥିଲା ।

କାରଣ ମୁଁ ଜଣେ ସ୍କୁଲ ଶିକ୍ଷକଙ୍କ ପୁଅ ! ତାପରେ ସେହି ବର୍ଷ କିମ୍ବା ତା ଆର ବର୍ଷ ସାର୍ ଜଗତସିଂହପୁର ହାଇସ୍କୁଲ ଛାଡ଼ି ଚାଲି ଆସିଥିଲେ । ତାଙ୍କ ବଦଳରେ ପ୍ରଥମେ ବାସୁଦେବ ମହାନ୍ତି, ନୃସିଂହ ଚରଣ କାନୁନ୍‌ଗୋ ଓ ଶେଷରେ ଭୂଗୋଳ ଶିକ୍ଷକ ଯୋଗେନ୍ଦ୍ର ନାଥ ଦାସ ଅବଶିଷ୍ଟ କେତେ ବର୍ଷ ପ୍ରଧାନ ଶିକ୍ଷକ ଦାୟିତ୍ୱ ବହନ କରିଥିଲେ ବେଳେ ମୁଁ ସେ ସ୍କୁଲର ଛାତ୍ର ଥିଲି । କିନ୍ତୁ ମୋ କିଶୋର ମନର ଓଦା ମାଟିରେ ସାର୍‌ଙ୍କ ସରଳ, ନିରଳସ, ସ୍ନେହ, ସକଳ ବ୍ୟକ୍ତିତ୍ୱର ଯେଉଁ ଦାଗ ପଡିଥିଲା, ଅନ୍ୟ କେହି ସେଭଳି ପ୍ରଭାବ ବିସ୍ତାର କରି ପାରି ନଥିଲେ । ବାସୁବାବୁ ଖୁବ୍ ଅଳ୍ପଦିନ ପାଇଁ ପ୍ରଧାନ ଶିକ୍ଷକ ଥିଲେ । ତାଙ୍କ ସହିତ ବ୍ୟକ୍ତିଗତ ପରିଚୟର ସୁଯୋଗ ନଥିଲା । ନୃସିଂହ ଚରଣ କାନୁନ୍‌ଗୋ ଥିଲେ ଗମ୍ଭୀର

ପ୍ରକୃତିର ଲୋକ । କଡା ମିଜାଜ୍‌ର ବଳିଷ୍ଠ ବ୍ୟକ୍ତିତ୍ୱ । ଛୁଟି ଦରଖାସ୍ତ ନିଜେ ନ ନେଇ ପିଅନ୍‌ ହାତରେ ତାଙ୍କ ପାଖକୁ ପଠାଉଥିଲୁ । ମନେ ମନେ ତାଙ୍କୁ ଭୟ କରୁଥିବା ହେତୁ ତାଙ୍କ ସହିତ ଆମର ଏକ ପ୍ରକାର ଅନତିକ୍ରମ୍ୟ ଦୂରତ୍ୱ ସୃଷ୍ଟି ହୋଇ ଯାଇଥିଲା । ଯୋଗେନ୍ଦ୍ର ବାବୁ ଆଗରୁ କ୍ଲାସ୍‌ ଟିଚର ଥିଲେ । ତେଣୁ ହେଡ୍‌ମାଷ୍ଟ୍ର ନିଯୁକ୍ତ ପରେ ମଧ୍ୟ ଆମେ ତାଙ୍କୁ ଭିନ୍ନ ଦୃଷ୍ଟିରେ ଦେଖି ପାରୁ ନଥିଲୁ ।

ଐତିହାସିକ ଫିରିଙ୍ଗି ହ୍ରଦ ଉପରେ ପ୍ରତିଷ୍ଠିତ ସେଇ ଉଚ୍ଚ ବିଦ୍ୟାଳୟର ପବିତ୍ର ପରିବେଶରେ, ନିମଫୁଲର ବାସ୍ନା ଯେତେବେଳେ ଭାସି ଆସେ, ହଠାତ୍‌ ସାର୍‌ଙ୍କ ସ୍ମୃତି ମନକୁ ମହକାଇ ଦିଏ । ଆଦ୍ୟ କୈଶୋର ନିର୍ମୋକ ଛାଡ଼ି ହାଫ୍‌ପ୍ୟାଣ୍ଟ୍‌ ଛାଡ଼ି ଫୁଲ୍‌ପ୍ୟାଣ୍ଟ୍‌ ପିନ୍ଧି କଲେଜରେ ପଢିବା ପାଇଁ ମୁଁ ଯେତେବେଳେ ଖ୍ରୀଷ୍ଟ କଲେଜରେ ନାମ ଲେଖାଇଲି; ପୁଣି ସାରଙ୍କୁ ଅଧ୍ୟାପକ ଭାବରେ ଦେଖିବି, ଏକଥା କେବେ କଳ୍ପନା ସୁଦ୍ଧା କରି ନଥିଲି ।

ସାର୍‌ ଭୁଲି ଯାଇ ଥିଲେ ।

ମୁଁ ଭୁଲି ନଥିଲି ।

ପରିଚୟ ଦେବାମାତ୍ରେ ତାଙ୍କର ରେଖାଙ୍କିତ ମୁହଁରେ କଲେଜ କରି ତରରେ ଯେଉଁ ସ୍ନିଗ୍ଧ ହସର ଆଲୋଡ଼ନ ସେଦିନ ଉଦ୍ଭାସିତ ହୋଇ ଉଠିଥିଲା; ତାହା କୌଣସି ଦିନ ମୁଁ ଭୁଲି ପାରିବି ନାହିଁ ।

ସାରଙ୍କ ବୟସ ବଢ଼ିଥିଲା; କିନ୍ତୁ ସାର୍‌ ବଦଳି ନଥିଲେ । ଧୋତି ଉପରେ ତାଙ୍କର ସେଇ କୋଟ୍‌, ଆଖିର ଚଷମା ଅନ୍ତରାଳରୁ ତାଙ୍କର ସେହି ସ୍ନେହ-କୋମଳ ଦୃଷ୍ଟି; ସବୁ ସେହିପରି ଅପରିବର୍ତ୍ତିତ ଥିଲା ।

ହାଇସ୍କୁଲରେ ପଢ଼ିଲା ବେଳେ ସେ ହେଡ୍‌ମାଷ୍ଟ୍ର ଚାକିରୀ ଛାଡ଼ି ଅଧ୍ୟାପକ ହୋଇ ଆସିଥିଲେ । ମୁଁ ବି. ଏ. ପଢ଼ୁଥିବା ସମୟରେ ସାର୍‌ ଖ୍ରୀଷ୍ଟ କଲେଜରୁ ଅବସର ନେଲେ । କିନ୍ତୁ କଟକ ଅବସ୍ଥାନ କାଳରେ ତାଙ୍କ ସହିତ ବାରମ୍ବାର ଦେଖା ହୋଇଥିଲା ।

ଦିନେ ମୁଁ ଛାତ୍ର ଥିଲି, ଆଉଦିନେ ଲେଖକ ହୋଇଗଲି, କଲେଜରେ ଛାତ୍ର ଥିଲାବେଳେ ଦେଖାହେଲେ ସାର୍‌ ପଚାରୁ ଥିଲେ, "କେମିତି ପଢ଼ାପଢ଼ି କରୁଛ ?"– ଚାକିରୀରୁ ଅବସର ନେଲା ପରେ ରାସ୍ତାରେ କିମ୍ବା

"ଗ୍ରନ୍ଥମନ୍ଦିର" ବହି ଦୋକାନରେ ଦେଖାହେଲେ ତାଙ୍କର ପ୍ରଶ୍ନ ଥିଲ, "ଆଉ ନୂଆ କଣ ଲେଖୁଛ ?"

ସେ ନିଜେ ମଧ୍ୟ ଲେଖା ଲେଖିରେ ମନୋ ନିବେଶ କରି ଥିଲେ । କିଶୋର ପାଠକମାନଙ୍କ ପାଇଁ ସ୍ମରଣୀୟ ଉପନ୍ୟାସ ମାନଙ୍କ ମୂଳ କାହାଣୀକୁ ନେଇ ନିଜ ଭଷାରେ ଛୋଟ ଛୋଟ ବହି ଲେଖି ସେ ସୁଖ୍ୟାତି ଅର୍ଜନ କରିଥିଲେ । ଚାର୍ଲସ ଡ଼ିକେନ୍‌ସଙ୍କ "ଡେଭିଡ଼ କପର ଫିଲ୍‌ଡ" ଜୁଲଭର୍ଣ୍ଣଙ୍କ " ଟୋଣ୍ଟି ଥାଉଜେଣ୍ଡ୍ ଲିଗ୍ ଅଣ୍ଡର ଦୀ ସି" ମାର୍କ ଟ୍ୱେନ୍‌ଙ୍କ "ଆଡ଼ଭେଞ୍ଚର ଅଫ୍ ଟମ୍ ସୟର୍", ଜେନ୍ ଅଷ୍ଟିନ୍‌ଙ୍କ" ପ୍ରାଇଡ ଏଣ୍ଡ ପ୍ରିଜୁଡ଼ିସ୍", ଜନ୍ କାରେଙ୍କ ମ୍ୟୁଟିକ ଅନ୍ ଦି ବାଉଣ୍ଟି," ଓ ଓ୍ୱିଲିକ୍ କଲିନ୍‌ସଙ୍କ" ଦ୍ୟ ମୁନ୍ ଷ୍ଟୋନ୍" ପ୍ରଭୃତି ସ୍ମରଣୀୟ ବିଦେଶୀ ଉପନ୍ୟାସକୁ ଜିଜ୍ଞାସୁ କିଶୋର ପାଠକ ମାନଙ୍କ ପାଇଁ ସରଳ, ସାବଲୀଳ ଭଷାରେ ସେ କେବଳ ସଂକ୍ଷେପରେ ଲେଖି ନଥିଲେ, ଫକୀର ମୋହନ ସେନାପତିଙ୍କ 'ଛମାଣ ଆଠଗୁଣ୍ଠ' ଉପନ୍ୟାସକୁ ମଧ୍ୟ ପିଲମାନେ ବୁଝିପାରିବା ଭଳି ଶୈଳୀରେ "ପିଲାଙ୍କ ଛମାଣ ଆଠଗୁଣ୍ଠ" ନାମରେ ରଚନା କରିଥିଲେ । ଏହା ବ୍ୟତୀତ 'ହୋମର କାହାଣୀ' ଗ୍ରୀସ୍ ଦେଶର ଉପକଥା ଓ ପୁରଣ କାହାଣୀ, ରମାୟଣ କାହାଣୀ,'ଆଲିବାବା' ଏବଂ "ଶକୁନ୍ତଳା" ପ୍ରଭୃତି କିଶୋର–ଗ୍ରନ୍ଥରେ ସେ ଦେଶବିଦେଶର ସ୍ମରଣୀୟ କାହାଣୀକୁ ଆକର୍ଷଣୀୟ ଶୈଳୀରେ ପରିବେଷଣ କରିଥିଲେ । ଓଡ଼ିଆ ଭଷାରେ କିଶୋର ସାହିତ୍ୟ ଅବହେଳିତ ଅବସ୍ଥାରେ ରହିଥିବା ବେଳେ ତାଙ୍କର ଏ ଆନ୍ତରିକ ଉଦ୍ୟମ କେବଳ ଖାଲି ତାଙ୍କର ସାହିତ୍ୟ ପ୍ରତି ନୁହେଁ ; କିଶୋର ପାଠକ ମାନଙ୍କ ପ୍ରତି ଜଣେ ଆଦର୍ଶ ଶିକ୍ଷକ ଭବରେ ତାଙ୍କର ମହାନ୍ କର୍ତ୍ତବ୍ୟବୋଧର ପରିଚୟ ବହନ କରିଛି ।

ସାର୍ ଆଜି ଆଉ ଆମ ଭିତରେ ନାହାଁନ୍ତି; କିନ୍ତୁ ଜଣେ ଆଦର୍ଶ ଶିକ୍ଷକ ଭବରେ ତାଙ୍କର ଅବଦାନ, ସାରସ୍ୱତ ସାଧନା କ୍ଷେତ୍ରରେ ତାଙ୍କର ଅପୂର୍ବ ନିଷ୍ଠା, ମୋ ମନ ଭିତରେ ଅମଳିନ ହୋଇ ରହିଛି, ରହିବ ।



# ପୂଜ୍ୟ ଗୁରୁ ଶ୍ରୀଧର ଦାସ
# ଏକ ମହାନ୍ ଆତ୍ମା

**ନାଟ୍ୟରତ୍ନ ଭଞ୍ଜକିଶୋର ପଟ୍ଟନାୟକ**

ମରଣର ବାଲୁକା-ଶଯ୍ୟାରେ ଗ୍ଭଲି ଗ୍ଭଲି ମନୁଷ୍ୟ ପରପାରିକୁ ଗ୍ଭଲିଯାଏ । ଆଉ ଫେରି ଆସେନା । ତାର ପଦଚିହ୍ନ ମଧ୍ୟ ଲିଭିଯାଏ । କିନ୍ତୁ ଯେଉଁ ବ୍ୟକ୍ତି ଏ ମର-ସଂସାରରେ ଆମ୍ଭମାନଙ୍କଠୁଁ ଚିରବିଦାୟ ଘେନି ସେହି ମହାଯାତ୍ରା ପଥରେ ଆଗେଇ ଯାନ୍ତି, ତାଙ୍କ ଆତ୍ମାର ପବିତ୍ରତା ତଥା ମହନୀୟତା ଆମ୍ଭମାନଙ୍କର ନୈତିକ-ଜୀବନ ଉପରେ ଗଭୀର ରେଖାପାତ କରିଥାଏ । ସେଇ ମଧୁର ସ୍ମୃତିକୁ ଆଦୌ ଭୁଲିହୁଏ ନାହିଁ ।

ଏହିଭଳି ଜଣେ ମହାନ୍ ବ୍ୟକ୍ତି ଥିଲେ ମୋ କଲେଜ ଜୀବନର ଗୁରୁ ଅଧ୍ୟାପକ ସ୍ୱର୍ଗତ ଶ୍ରୀଧର ଦାସ ।

ଅଧ୍ୟାପକ ଦାସ କେବଳ ଜଣେ ଉଚ୍ଚକୋଟୀର ଶିକ୍ଷାବିତ୍ କିମ୍ବା ଛାତ୍ରବତ୍ସଳ ଶିକ୍ଷକ ନ ଥିଲେ; ସେ ଥିଲେ ଆମର ପରାମର୍ଶ ଦାତା ଏବଂ ଜଣେ ହିତୈଷୀ ଅଭିଭାବକ । ଛାତ୍ରମାନଙ୍କ ସୁଖରେ ସୁଖୀ ଓ ଦୁଃଖରେ ସମବେଦନଶୀଳ । ତାଙ୍କୁ ଅଧ୍ୟାପକ ଭାବରେ ପାଇ ଖ୍ରୀଷ୍ଟ କଲେଜର ଓଡ଼ିଆ ବିଭାଗ ଗୌରବାନ୍ୱିତ ହୋଇଥିଲା କହିଲେ ଅତ୍ୟୁକ୍ତି ହେବନାହିଁ ।

ଖ୍ରୀଷ୍ଟକଲେଜର ଜଣେ ମେଧାବୀ ଛାତ୍ର ଭାବେ ମୁଁ ଆଇ. ଏ. ଓ ବି. ଏ. (ଡ଼ିଷ୍ଟିଂସନ ସହ) ପାଶ୍ କରିଥିଲି । କଲେଜର ତତ୍କାଳୀନ ଅଧ୍ୟକ୍ଷ ରେଭରେଣ୍ଡ ବ୍ରଜାନନ୍ଦ ମହାନ୍ତି ଓ ଅନ୍ୟାନ୍ୟ ଅଧ୍ୟାପକ ମାନଙ୍କର ଆଶୀର୍ବାଦ ମୋ ପ୍ରତି ପ୍ରଚ୍ଛନ୍ନ ଭାବରେ ରହିଥିଲା । ସେହି ସମୟରେ ଓଡ଼ିଶାର

ଜଣେ ବିଶିଷ୍ଟ ନାଟ୍ୟକାର ଭାବେ ମୁଁ ଯଥେଷ୍ଟ ଖ୍ୟାତି ଲାଭ କରିଥିଲି । ମୋର ସଫଳ ନାଟ୍ୟକୃତିରେ ଅଭିଭୂତ ହୋଇ ଶ୍ରୀଧର ବାବୁ ଭୂୟସୀ ପ୍ରଶଂସା କରୁଥିଲେ ଏବଂ ମୋର ଉତ୍ତରୋତ୍ତର ଉନ୍ନତି କାମନା କରୁଥିଲେ ।

ଆଜି ସେ ଆମ ଭିତରେ ନାହାନ୍ତି; ହେଲେ ତାଙ୍କର ସେଇ ଅପୂର୍ବ କର୍ତ୍ତବ୍ୟନିଷ୍ଠା, ପ୍ରଗାଢ ପାଣ୍ଡିତ୍ୟ ଓ ମହନୀୟ ଚରିତ୍ରବତ୍ତା ଆମ୍ଭମାନଙ୍କ ନିକଟରେ ଏକ ବଳିଷ୍ଠ ବ୍ୟକ୍ତିତ୍ୱର ମହତ ଆଦର୍ଶ ଉଜ୍ଜୀବିତ କରି ରଖିଅଛି ।

ଦିନକର କଥା । କଲେଜ ୟୁନିଅନ୍‌ର କୌଣସି ଗୋଟିଏ କାମରେ ମୁଁ ତାଙ୍କ ଘରକୁ ଯାଇଥିଲି । ମତେ ଦେଖିଲାକ୍ଷଣି ସେ ଆଦରରେ ଘର ଭିତରକୁ ଡାକି ନେଲେ ଓ କୁଶଳ ପ୍ରଶ୍ନ ଜିଜ୍ଞାସା କଲେ । ଯେଉଁ କାମରେ ଯାଇଥିଲି, ସେ ଦିଗରେ ମତେ ଉପଯୁକ୍ତ ପରାମର୍ଶ ଦେଲେ । ତାପରେ ତାଙ୍କଠୁଁ ବିଦାୟ ନେଇ ଆସିବାକୁ ବାହାରିଛି, ମତେ ପଛରୁ ଡାକି କହିଲେ, "ଭଞ୍ଜ କିଶୋର, ଟିକିଏ ଅପେକ୍ଷା କର ।" ମୁଁ ଅପେକ୍ଷା କଲି । ସେ ଘର ଭିତରକୁ ଯାଇ ବିଡ଼ାଏ ଖାତାଧରି ଆସିଲେ । କହିଲେ, 'ଯେ ସବୁ ତୁମରି ଖାତା । M. I. L. ମୁଁ ଦେଖି ସାରିଲିଣି । ତୁମର କେତେ ନମ୍ବର ଅଛି ଜାଣିବାକୁ ଚାହୁଁଚ କି ?"

"ସାର୍, ଯଦି କହିବେ, ଦୟାକରି କେତେ ନମ୍ବର ଅଛି କୁହନ୍ତୁ ।" ମୁଁ ବିନମ୍ର କଣ୍ଠରେ ଉତ୍ତର ଦେଲି । ଟିକିଏ ହସି ଦେଇ ସେ କହିଲେ, "ତୁମେତ ଜଣେ ସୁଲେଖକ, ନାଟ୍ୟକାର । ତାଛଡ଼ା ଶ୍ରେଣୀର ଜଣେ ମେଧାବୀ ଛାତ୍ର । କେତେ ନମ୍ବର ଥିବ ବୋଲି ଭାବୁଚ ?"

ଟିକିଏ ଇତଃସ୍ତତଃ ହୋଇ କହିଲି, "ସାର୍, ମୋର ବୋଧହୁଏ ୬୩ କିମ୍ବା ୬୪ ଥିବ ?"

"ତୁମର ଏତେ Confidence ରହିଛି ନିଜ ଉପରେ ?"

"ଧୃଷ୍ଟତା ମାର୍ଜନା କରିବେ ସାର୍ ! M. I. L. ରେ ଭଲ କରିଚି ବୋଲି ମୋର ଧାରଣା ।"

"ହଉ ତେବେ ଦେଖିବା" କହି ସାର୍ ସବୁ ଖାତା ଭିତରୁ ମୋ ଖାତାଟିକୁ ଖୋଜି ବାହାର କଲେ । M. I. L. ରେ ମୋର ୬୫ ନମ୍ବର ଥିଲା ।

ଖୁସି ହୋଇ ଅଧ୍ୟାପକ ଦାସ ମୋ ପିଠି ଥାପୁଡ଼ାଇ ଦେଲେ । କହିଲେ, "ତୁମେ ଠିକ୍ କହିଥିଲ । ପ୍ରକୃତରେ ନିଜକୁ assess କରି ପାରିବା ଉତ୍ତମ ଛାତ୍ର ପକ୍ଷରେହିଁ ସମ୍ଭବ । "

ତାଙ୍କ ପାଦଧୂଳି ନେଇ ଘରକୁ ଫେରିଲି ।

ଦୀର୍ଘ ଚାରିବର୍ଷ କାଳ ମୁଁ ତାଙ୍କ ଛାତ୍ର ଥିଲି । ଓଡ଼ିଆ ଅଧ୍ୟାପକ ଭାବରେ ତାଙ୍କ ଶିକ୍ଷାଦାନ ପଦ୍ଧତି ଅତି ଉଚ୍ଚକୋଟୀର ଥିଲା । କୌଣସି ବିଷୟରେ ସନ୍ଦେହ ଥିଲେ, ସେ ଭଲଭାବେ ବୁଝାଇ ଦେଉଥିଲେ ଓ ବିଭିନ୍ନ ଦିଗରୁ ବାଖ୍ୟା କରୁଥିଲେ । ଶ୍ରେଣୀରେ ପିଲାମାନଙ୍କୁ ପ୍ରଶ୍ନ ପଚାରି ଉତ୍ତର ଆଦାୟ କରୁଥିଲେ ।

ଗୁଣୀ ଲେକଙ୍କର ଗୁଣ ବର୍ଣ୍ଣନା କଲେ ସରେନାହିଁ । ବହୁ ସଦ୍‌ଗୁଣ ମଣ୍ଡିତ ହୋଇ ସେ ଥିଲେ ଜଣେ ସରଳ, ନିରାଡ଼ମ୍ବର ମନୁଷ୍ୟ । ତାଙ୍କ ନିକଟରେ ଛାତ୍ର ସମାଜ ବହୁ ଦିଗରୁ ଋଣୀ । ଜଣେ ଅନୁରାଗୀ ଛାତ୍ର ହିସାବରେ, ତାଙ୍କର ବାର୍ଷିକ ଶ୍ରାଦ୍ଧ ବାସରରେ ମୋର ଏଇ ଅଶ୍ରୁଳ ଶ୍ରଦ୍ଧାଞ୍ଜଳି ।



# ଶ୍ରୀ ଗୁରବେ ନମଃ

## ଡକ୍ଟର ରବୀନ୍ଦ୍ର କୁମାର ପ୍ରହରାଜ

ବସ୍ତୁତଃ ସମୟର ଅପ୍ରତିହତ ପ୍ରଭବକୁ ସେତିକିବେଳେ ମୁଣ୍ଡ ନୁଆଇଁ ସ୍ୱୀକାର କରିନେବାକୁ ହୁଏ, ଯେତେବେଳେ ଅଙ୍ଗରେ ଲିଭିଇଥିବା ଅନୁଭୂତିର ସ୍ମୃତି ଅବିକଳ ଜାଗ୍ରତ ହୋଇଉଠେ । ଅଧ୍ୟାପକ ଶ୍ରୀଧର ଦାସଙ୍କ ବିୟୋଗ ବାର୍ତ୍ତା ସମ୍ବାଦ-ପତ୍ରରୁ ପାଠ କଲା ବେଳେ ମୋର ସେହି ଅବସ୍ଥା ଘଟିଥିଲା । ଯେ ଥିଲେ ଏକଦା ଚକ୍ଷୁଷ ବର୍ତ୍ତମାନ, ସେ ବର୍ଷ କେତୋଟିର ବ୍ୟବଧାନରେ ଆଜି ସଂପୂର୍ଣ୍ଣ ତିରୋହିତ । ଏଇତ କାଳ, ଏଇତ ତା'ର ଅଖଣ୍ଡ ପରିଣାମ । ଯିବାର କଥା ଯାହାର, ସେ'ତ ଯିବେ, ଯେ ରହିବେ, ସେ ଭଳି ହେବେ । ଏହି ଭଳି ହେବାଟା ତାଙ୍କ ସାଙ୍ଗେ ସାଙ୍ଗେ ରହିଥିବ । ସମୟ, ଅସମୟରେ ଭାବନା-ରାଜ୍ୟରେ ସୁଖ-ଦୁଃଖର ସ୍ମୃତି ରୂପେ ଭାସି ଯାଉଥିବ..............

୧୯୫୪ ରୁ ୧୯୫୮– ଏହି ଚାରିବର୍ଷ ଧରି ମୁଁ ଥିଲି ଖ୍ରୀଷ୍ଟ କଲେଜରେ ଜନୈକ ଅଧ୍ୟାୟୀ । ମୋର ଆଇ. ଏ ରେ ଇଚ୍ଛାଧୀନ ବିଷୟ ଓ ବି. ଏ.ରେ ଓଡ଼ିଆ ଅନର୍ସ ଥିବାରୁ ତତ୍କାଳୀନ ଖ୍ରୀଷ୍ଟ କଲେଜର ଓଡ଼ିଆ ବିଭାଗର ମୁଖ୍ୟ ଅଧ୍ୟାପକ ଶ୍ରୀଧର ଦାସଙ୍କୁ ଘନିଷ୍ଠତର ଭାବରେ ଜାଣିବାର କିଛି ଅବକାଶ ମୋର ଥିଲା, ରହିବା ସ୍ୱାଭାବିକ । ମୁଁ ଅନ୍ୟ ସହପାଠୀମାନଙ୍କ କଥା କହି ନ ପାରିଲେବି ଶ୍ରୀଧର ସାର୍‌ଙ୍କୁ ପ୍ରଥମେ 'ଚନ୍ଦ୍ରବିଳାସ' କାବ୍ୟ ପଢ଼ାଇବାକୁ ଆସିବାର ଦେଖି ମଫସଲ ସ୍କୁଲମାନଙ୍କରୁ ଆସିଥିବା ଆମ କେତେକଙ୍କୁ ସେ ଭଳି ଆପଣାର ମନେ ହୋଇଥିଲେ । ଧଳା ଧୋତି-ପଂଜାବୀ ପରିହିତ ତାଙ୍କର ଚେହେରା ସାଙ୍ଗକୁ ପାଠ ପଢ଼ାଇବାର ଏକାନ୍ତ ସରଳ, ପ୍ରାଞ୍ଜଳରୀତି ଭିତରେ ଗୋଟାଏ ଅନୌପଚାରିକ ମୌଳିକତା ତାଙ୍କୁ ଆମ୍ଭମାନଙ୍କର ସମ୍ମାନାର୍ହ କରି ଦେଇଥିଲା ।

କଲେଜରେ ପ୍ରଥମ ବର୍ଷଟି ମୋର କଟିଗଲା ଏକ ଆବେଶରେ । ଅର୍ଥ ଓ ସ୍ଥାନର ଯଥାଯଥ ବ୍ୟବସ୍ଥା ଘଟି ପାରି ନ ଥିବାରୁ ମୁଁ ସେଇଥିରେ ଘାରି ହୋଇ ଅନ୍ୟ କେଉଁ ଆଡ଼କୁ ଦୃଷ୍ଟି ପକାଇ ପାରି ନଥିଲି । ଦ୍ୱିତୀୟ ବର୍ଷ ଅବସ୍ଥା କ୍ରମଶଃ ଅଭ୍ୟାସଗତ ଭାବରେ ସହନୀୟ ହୋଇଯିବାରୁ ମୁଁ ଅଧ୍ୟାପକ, ଅଧ୍ୟୟନ ଓ ତତ୍‌ସଂପୃକ୍ତ ପରିବେଶ ପ୍ରତି ମନୋଯୋଗୀ ହେଲି । ପ୍ରିଟେଷ୍ଟ୍ ପରୀକ୍ଷା ସରିଥାଏ ସେତେବେଳକୁ । ଦିନେ ଗୋଟିଏ ପିଅନ ଯାଇ, ତାକୁ ପଚାରି ପଚାରି ଶେଷରେ ମୋତେ ଚିହ୍ନିପାରି ଅଫିସକୁ ଡାକିନେଲା । ମୁଁ ମନେ ମନେ ଟିକେ ଡରି ଯାଇଥାଏ । ଏତେ ପିଲାଙ୍କ ଭିତରୁ ମୋତେ ଖୋଜା ପଡ଼ିଲା କାହିଁକି ? ଜାଣିବା, ଶୁଣିବାରେ ବନ୍ଧୁ-ସତୀର୍ଥମାନଙ୍କ ସହିତ ମୋର ବାଚନିକ ପରିହାସ ବା ଉଚ୍ଚବାଚ ହେବା ବ୍ୟତୀତ ଅନ୍ୟ କୌଣସି ପ୍ରକାର ଧର୍ତ୍ତବ୍ୟ ତ୍ରୁଟି-ବିଚ୍ୟୁତି ତ ଘଟିନାହିଁ ! କ'ଣ ପାଇଁ ଏ ଡାକରା ! ଧୋତି ଓ ଅଧାହାତ କାମିଜ୍ ପିନ୍ଧା ମଫସଲିଆ ଢଙ୍ଗର ପିଲାଟିଏ ଥିଲି ମୁଁ । ଡରି ଡରି ଅଫିସ୍ ଭିତରକୁ ଗଲି । କିରାଣୀ ଥାଆନ୍ତି ବ୍ରଜବାବୁ । ନିଶ ଧାରକ ତାଙ୍କୁ ବଡ଼ ମନଭରିଲା ସେତେବେଳେ । ସେ ଗମ୍ଭୀର ଭାବରେ ପଚାରିଲେ ମୋ ନାଁ ଓ କାଗଜଟିଏ ସାଙ୍ଗରେ ମିଳାଇ ନେଲେ । ମୁଁ ଏଥରକ ପ୍ରକୃତରେ ଭାରି ଭୟ ପାଇଗଲି । ସେ ସେହି କାଗଜରେ ଦସ୍ତଖତ କରିବାକୁ ମୋତେ କହିଲେ । ଦେଖିଲି ବେଳକୁ ମୋ ସହିତ ଆହୁରି ୮।୧୦ ଜଣଙ୍କ ନାଁ ଲେଖାଅଛି ଓ ନାଁ ଡାହାଣରେ ଟଙ୍କା ସବୁ ପଡ଼ିଛି । ବ୍ରଜବାବୁଙ୍କ ଠାରୁ ଏକାବେଳେକେ କୋଡ଼ିଏ ଟଙ୍କା ଗଣି ନେଇ ମୁଁ ଯେ ସେଦିନ, ସେତେବେଳେ କି ଆଶ୍ୱସ୍ତି ଅନୁଭବ କରିଥିଲି, ଆଜି ବା କୌଣସି ଦିନ ମୁଁ ଭାଷାରେ ତାହା ପ୍ରକାଶ କରି ପାରିବି ନାହିଁ । ସେଇଥିରୁ ଦୁଇମାସର ବାକିଥିବା ଦରମା ଆଠଟଙ୍କା ଓ ଜୋରିମାନା ଟଙ୍କାଟିଏ ଦେଇଦେଲି ସେଇଠି ସଙ୍ଗେ ସଙ୍ଗେ । ଏହାପରେ ବରାବର ପ୍ରତି ଦୁଇ ବା ତିନି ମାସରେ ଅଫିସରୁ ଟଙ୍କା କିଛି କିଛି ମୋତେ ମିଳିବାକୁ ଲାଗିଲା । ପରେ ବୁଝିଲି, ସେ ଟଙ୍କା ପାଇବା ପଛରେ ଥିଲା ଶ୍ରୀଧର ସାରଙ୍କ ସୁପାରିଶ୍ । ସେ ଟଙ୍କା ଥିଲା ବିଶ୍ୱବିଦ୍ୟାଳୟ ଅନୁଦାନ ଓ ତା'ର ଆବଣ୍ଟନ ଦାୟିତ୍ୱ ଅଧ୍ୟକ୍ଷ ରେଭରେଣ୍ଡ୍ ବ୍ରଜାନନ୍ଦ ମହାନ୍ତିଙ୍କୁ ଅଫିସ୍ ପରିଚାଳନାରେ ପ୍ରତ୍ୟକ୍ଷ ସାହାଯ୍ୟ କରୁଥିବା ଶ୍ରୀଧର ସାର୍‌ଙ୍କଠାରେ ନ୍ୟସ୍ତଥିଲା । ସାର୍

ଏତେ ପିଲାଙ୍କ ଭିତରୁ ମୋତେ କିପରି ଓ କାହିଁକି ବାଛିଲେ, ମୁଁ ନିର୍ଦ୍ଦିଷ୍ଟ ଭାବରେ ଜାଣି ନଥିଲି । କାରଣ ମୁଁ ବ୍ୟକ୍ତିଗତ ଭାବରେ ଏ ପ୍ରକାର ଆର୍ଥିକ ସାହାଯ୍ୟ ପାଇଁ ସାର୍‌ଙ୍କ ଠାରେ ପ୍ରାର୍ଥୀ ହୋଇ ନଥିଲି କିମ୍ବା କୌଣସି ଲିଖିତ ଆବେଦନ ଜଣାଇ ନଥିଲି । ଶ୍ରେଣୀ ପରୀକ୍ଷାମାନଙ୍କରେ କିଞ୍ଚିତ୍ ଆଶାଜନକ ଫଳ ପ୍ରଦର୍ଶନ କରିଥିବାରୁ ଓ ବେଶ, ପୋଷାକ ତଥା ଚାଲି-ଚଳଣରେ ଏକାନ୍ତ ସାଧାରଣ ଥିବାରୁ ବୋଧହୁଏ, ମୁଁ ସାର୍‌ଙ୍କ ଦୃଷ୍ଟି ପଥକୁ ଆସିଥିଲି । ସେ ଯାହା ହେଉ, ଆଜିର କଲେଜ୍-ପରିବେଶରେ ସେ ପ୍ରକାର ଅନୁଗ୍ରହ ପ୍ରଦର୍ଶନ କିମ୍ବା ଅନୁଗ୍ରହ ଲାଭ ଉଭୟ ଦୁର୍ଲଭ ମନେ ହେଉଥିବାରୁ ଆଜି ତା'ର ଗୁରୁତ୍ୱ ଓ ମହତ୍ତ୍ୱ ଅଧିକ ବାରି ହେଉଛି ।

ଆଇ. ଏ. ପରୀକ୍ଷା ଫଳ ବାହାରିବାର ଅଳ୍ପ ଦିନ ହୋଇଥାଏ ମୁଁ ଇତିହାସ ଅନର୍ସ ନେଇ ବି. ଏ ପଢିବାକୁ 'ରେଭେନ୍‌ସା' ଯିବାକୁ ସ୍ଥିର କରି ମାର୍କସିଟ୍ ଓ ସାର୍ଟିଫିକେଟ୍ ଆଣିବା ପାଇଁ କଲେଜ୍ କାଉଣ୍ଟର୍‌ରେ ଠିଆ ହେଲି । ଭିତରେ କିରାଣୀ ବ୍ରଜବାବୁଙ୍କ ସାମାନାରେ ବସିଥାନ୍ତି ଶ୍ରୀଧର ସାର୍ । ମୁଁ ମୁଣ୍ଡ ନୁଆଇଁ ପ୍ରଣାମ କଲି । ସାର୍‌ଙ୍କ ଗୋଚରାର୍ଥେ ମୋର ଅଭିପ୍ରାୟ ଜଣାଇଲି । ସାର୍ ହଠାତ୍ କିଛି ନକହି ମାର୍କସିଟ୍–ଗଟ୍ଟି କାଢି ଦେଖିଲେ । ମୋ ନାଁ ବୋଧହୁଏ ସେ ଜାଣିଥିଲେ । ଦେଖିଦେଇ କହିଲେ, ତମର ଓଡ଼ିଆରେତ ଖୁବ୍ ଭଲ ମାର୍କ ଅଛି । ଓଡ଼ିଆ ଅନର୍ସ ନେଉନ ? " ମୁଁ ଥା ଥା ମା ମା ହୋଇ ମୋ ଦରଖାସ୍ତଟି ବଢାଇ ଦେଲି । ସାର୍ ପୁଣି କହିଲେ ଓଡ଼ିଆ ଅନର୍ସ ନେଇ ଯେବେ ପଢିବାକୁ ଚାହୁଁଛ, ଆମର ଏଇଠି ପଢ । ଆମେ ତୁମର ବ୍ୟକ୍ତିଗତ ତତ୍ତ୍ୱ ନେବୁ । ରେଭେନ୍‌ସାରେ ତୁମେ କୁଆଡ଼େ ହଜି ଯିବ । " ମୁଁ ସନ୍ଦିଗ୍ଧ ଦୃଷ୍ଟିରେ ବୋଧ ହୁଏ ଚାହିଁଥିଲି । କାରଣ ମୋ ମୁହଁକୁ ଚାହିଁ ସାର୍ ପୁଣି କହିଲେ, "ଆମର ଏଠିକାର ଅନର୍ସ ପିଲା ବିଶ୍ୱ ବିଦ୍ୟାଳୟରେ ପ୍ରଥମ ହୁଅନ୍ତି, ଜାଣିଛ ?" ସାର୍ ଦୃଷ୍ଟି ନୁଆଇଁ ନେବାରୁ ଚଷମାଟି ନାକ ଅଗକୁ ଖସି ଆସିଥାଏ । ମୁଁ ଏତେ ଗୁଡ଼ାଏ କଥା ଏକାବେଳେକେ ବ୍ୟକ୍ତିଗତ ଆଦେଶ-ଉପଦେଶ ଭାବରେ କଲେଜ୍‌ରେ ପଢିବା ଦିନୁ ଶୁଣି ନଥିଲି । ମନଟା ପ୍ରସାଦିତ ହୋଇ ଉଠିଲା । ସଙ୍ଗେ ସଙ୍ଗେ ସମ୍ମତି ପ୍ରକାଶ କଲି । ସେଇଠି, ସେହି ମୁହୂର୍ତ୍ତରେ ହିଁ ଆରମ୍ଭ ହୋଇଗଲା ବି. ଏ ଶ୍ରେଣୀରେ ନାଁ ଲେଖା ବ୍ୟବସ୍ଥା । ସବୁ ତଦାରଖ କଲେ ଶ୍ରୀଧର

ସାର୍ ନିଜେ ।   ସେ କୋଳାହଳ ମଧ୍ୟରେ ମୁଁ ଭୁଲି ଗଲି ଆଉ. ଏ ମାର୍କସିଟ୍ ଆଣିବାକୁ । ଆଜି ବି ସେଇଟି ମୋ ପାଖରେ ନାହିଁ ।  ସେଦିନ ସେହିକ୍ଷଣରେ ସାର୍ ଯଦି ମୋ ଦୃଷ୍ଟିକୁ ଆସି ନ ଥାନ୍ତେ, ମୁ ଓଡ଼ିଆ ବିଭାଗରେ ଅଧ୍ୟାପନା ବୃତ୍ତି ବରଣ କରିବା ସମ୍ଭବ ହୋଇଥାନ୍ତା କି ନାହିଁ, କିଏ ଜାଣେ ?

୧୯୫୬ ରୁ ୧୯୫୮, ପୁଣି ଦୁଇବର୍ଷ—ସେଇ କଲେଜ୍, ସେଇ ପରିଚିତ ଶ୍ରେଣୀ ପ୍ରକୋଷ୍ଠ, ସେଇ ପୁସ୍ତକାଗାର, ସେଇ ଅଧ୍ୟାପକ ମଣ୍ଡଳୀ— ସବୁ ମନେ ହେଲେ ଆପଣାର । ପୁଣି ସେହିଭଳି ସାମୟିକ ଆର୍ଥିକ ସହାୟତା ପାଇଲି ମୁଁ ।  ଗୀଧର ସାର୍ ଆମର ଏମ୍. ଆଇ.ଏଲ୍. କ୍ଲାସ ନେଲେ ଯେ ଅଧିକାଂଶ ଦିନ ସେ କ୍ଲାସ୍ ହୋଇ ପାରିଲା ନାହିଁ । ସାରଙ୍କ ଉପରେ ଅଫିସ କାର୍ଯ୍ୟର ଚାପ ଥିଲା ପ୍ରବଳ । ସେଥିପାଇଁ ସେ ନିଜ ହାତରେ କ୍ଲାସ୍ ସସ୍‌ପେନ୍‌ଶନ୍ ନୋଟିସ୍ ଲେଖି ଆମ୍ଭମାନଙ୍କୁ ଜଣାଇ ଦେଇଥାନ୍ତି ।  ଓଡ଼ିଆ ପାଶ୍ ଶ୍ରେଣୀରେ 'ତପସ୍ୱିନୀ' ଓ ଅନର୍ସ ଶ୍ରେଣୀରେ 'କୋଣାର୍କେ' ପଢ଼ାଉ ଥିଲେ ଗୀଧର ସାର୍ ।  ଅଧିକାଂଶ ସମୟରେ ମୋ ବହିଟିକୁ ନେଇ ସେ ପଢାନ୍ତି । ପଢା ଶେଷରେ ନିଜ ହାତରେ ବହିଟିର ସେହି ଅଂଶରେ ତାରିଖ ଲେଖି ଦିଅନ୍ତି । ଆଜି ମନେ ପଡ଼ୁଛି, ସାର୍‌ଙ୍କର ଅବବୋଧ ସ୍ୱଷ୍ଟ ଥିବାରୁ ବୁଝାଇବାର ଭଙ୍ଗୀଟି ଥିଲା ପ୍ରାଞ୍ଜଳ । 'ତପସ୍ୱିନୀ'ରେ ଯେଉଁ ଯେଉଁ ସ୍ଥଳରେ ସଂସ୍କୃତ କାବ୍ୟ ନିହିତ ଶ୍ଳୋକ ମାନଙ୍କର ଅନୁବାଦ କରଯାଇଛି ବା ଛାୟାପାତ ଘଟିଛି, ସେହି ଶ୍ଳୋକ ଗୁଡ଼ିକୁ ସେ କଳାପଟାରେ ଗୋଲ ଗୋଲ ଅକ୍ଷରରେ ଲେଖି ଦିଅନ୍ତି ଓ ବୁଝାଇ ଦିଅନ୍ତି ।  ଶିକ୍ଷକ ଭାବରେ ସେ ବର୍ଣ୍ଣିତବ୍ୟ ବିଷୟର ଭାବରେ କିପରି ମଜ୍ଜି ଯାଆନ୍ତି, ତାହାର ନିର୍ଦ୍ଦିଷ୍ଟ ପରିଚୟ ଆମେ ପାଇଲୁ ସେହିଦିନ, ଯେଉଁଦିନ ସେ ପଢାଉଥାନ୍ତି 'ତପସ୍ୱିନୀ'ର ସେହି ଛନ୍ଦ ଯେଉଁଥିରେ ରାମଚନ୍ଦ୍ର ଅଶ୍ୱମେଧ ଯଜ୍ଞାନୁଷ୍ଠାନ କରୁଛନ୍ତି ବୋଲି ଜାଣିବା ପରେ ସୀତା ସମସ୍ତଙ୍କୁ ଲୁଚାଇ ରାମଚନ୍ଦ୍ରଙ୍କ ପାଖକୁ ଚିଠିଟିଏ ଲେଖୁଛନ୍ତି ଓ ଲେଖିବା ସଙ୍ଗେ ସଙ୍ଗେ ଅନର୍ଗଳ ଅଶ୍ରୁ ବର୍ଷଣ କରି ଚାଲିଛନ୍ତି । ସାର୍ ପଢାଉଥାନ୍ତି ବହିକୁ ଚାହିଁ କିନ୍ତୁ ଚଷମା ଭିତର ଦେଇ ତାଙ୍କ ଆଖିରୁ ବହି ଚାଲିଥାଏ ଲୁହ । ହାତରେ ପୋଛି ପକାଉଥାନ୍ତି ସେ ଲୁହକୁ । ମୁଁ ବସିଥାଏ ଆଗରେ । ଏକଲୟରେ ଚାହିଁଥାଏ

ସାରଙ୍କୁ ଓ ମୋ ଆଖିରୁ ଲୁହ ଝରୁଥାଏ । ସେ ଦିନର ସେ ସ୍ମୃତି ମୋର ଏକାନ୍ତ ଅପାଶୋର । ଆଜିକୁ ଦୀର୍ଘ ପଚିଶ ବର୍ଷର ଅଧ୍ୟାପକ–ଜୀବନରେ ବହୁବାର 'ତପସ୍ୱିନୀ' ପଢାଇବାକୁ ପଡ଼ିଛି ମୋତେ । ସେଇଠି ସେହି ଅଂଶରେ ମୋର କଣ୍ଠ ବାଷ୍ପରୁଦ୍ଧ ହୋଇଯାଏ, ଚକ୍ଷୁ ଲୋତକସିକ୍ତ ହୋଇ ଉଠେ । ମନଶ୍ଚକ୍ଷୁରେ ଭସି ଉଠେ ଶ୍ରୀଧର ସାର୍‌ଙ୍କର ସେଇ ବିଗଳିତ ଅଶ୍ରୁ-ସଜଳ ପ୍ରଚକ୍ଷୁ ପିନ୍ଧା ମୁହଁଟି । ଆହା, ସେ ବ୍ୟକ୍ତିମାନେ ସବୁ କ୍ରମଶଃ ହଜି ଯାଉଛନ୍ତି । 'ଗ୍ରାହକତା ବିନା କବି ସ୍ୱର୍ଗସୁଖ ଆନମୂଲେ କବି ତୋଷଇ କେହି ।' ନୀଳକଂଠଙ୍କର ଏ ଉକ୍ତି କେଡ଼େ ପ୍ରଣିଧାନ୍ୟ ! କାବ୍ୟ ବା କବିତା ପାଠକରି ସେଥିରେ ନିଜେ ମଜ୍ଜି ଛାତ୍ରମାନଙ୍କୁ ମଜାଇ ଦେବାର ଆଦର୍ଶ, ନିଷ୍ଠା, ଭବବତ୍ତା ବା ସାଧନା ଏବେ କ୍ରମଶଃ କ୍ଷୀଣ ହୋଇ ଆସୁଥିବା ବେଳେ ଶ୍ରୀଧର ସାର୍‌ଙ୍କ ସ୍ମୃତି ଅଧିକରୁ ଅଧିକ ଜୀବନ୍ତ ହୋଇ ଉଠେ ।

ବି.ଏ. ଶେଷ ବର୍ଷ । ପ୍ରିଟେଷ୍ଟ ପରୀକ୍ଷାର ଅନର୍ସ ଖାତା ସାର୍ ନିଜେ ଦେଖୁଥାନ୍ତି । ଖାତା କହିଲେ ପାଞ୍ଚଟି । ସେଥିରେ ମୁଁ ସର୍ବୋଚ୍ଚ ନମ୍ବର ବୋଧହୁଏ ୬୬ ପାଇଥାଏ । ସେ ଖାତାଟିକୁ ମୋର ସହାଧ୍ୟାୟୀମାନେ ତ ଦେଖିଲେ, ପଢ଼ିଲେ, ରେଭେନ୍‌ସା କଲେଜ ଅନର୍ସ ପିଲ ମଧ୍ୟ ଶୁଣା ଶୁଣି କରି ଆସିଥିଲେ ଦେଖିବାକୁ । କିଏ କେତେ ପ୍ରକାର ମନ୍ତବ୍ୟ ଦେଲେ । ସେ ଗୁଡ଼ାକ ମୋର ମନେ ନାହିଁ । କିନ୍ତୁ ଏତିକି ମନେ ଅଛି ମୋର ଆତ୍ମ ବିଶ୍ୱାସ ଏହା ପରେ ଅନେକ ବଢ଼ିଗଲା । ଦିନ, ଘଡି ପଢ଼ିବାରେ ଲାଗିଲି ମୁଁ । ମୋର ଦୁର୍ଭାଗ୍ୟ, ଠିକ୍ ଶେଷ ପରୀକ୍ଷା ପୂର୍ବରୁ ମୋତେ ହେଲା ଜଣ୍ଡିସ୍ । ଜମା ଖାଇବାକୁ ପ୍ରବୃତ୍ତି ହେଲା ନାହିଁ । ସେଥିରେ ଜର ରହିଲା ଦେହରେ । ୧୦୧°ରୁ ଅଧିକ ଜର ଦେହରେ ଧରି ମୁଁ ଇଂରାଜୀ ପତ୍ରମାନଙ୍କରେ ପରୀକ୍ଷା ଦେଲି । ଅନର୍ସ ବେଳକୁ ଜର କମିଗଲେ ବି ଦୁର୍ବଳତା ଓ ମୁଣ୍ଡ ବୁଲା ସେମିତି ରହିଲା । ଆସୁଥିବା ବିଷୟ ତରବର ହୋଇ ସମୟ ସୀମା ମଧ୍ୟରେ ଲେଖି ପାରିଲି ନାହିଁ । ତା ସତ୍ତ୍ୱେ ଅନର୍ସ ୨ୟ ଓ ୩ୟ ପତ୍ରରେ ମୁଁ ସର୍ବୋଚ୍ଚ ନମ୍ବର ରଖିଲି ଓ ବିଶ୍ୱ ବିଦ୍ୟାଳୟ ପରୀକ୍ଷାରେ ଅନର୍ସରେ ଶତକଡ଼ା ୫୫ ନମ୍ବର ସହ ତୃତୀୟ ସ୍ଥାନ ପାଇଲି । ପୂର୍ବ ଥର ଭଳି ମାର୍କ-ସିଟ୍ ଆଣିବାକୁ ଗଲାବେଳକୁ ଶ୍ରୀଧର ସାର୍ ଦସ୍ତଖତ କଲେ ଓ ମୋର ଅନୁରୋଧ କ୍ରମେ ନିଜ ହାତରେ ବ୍ୟକ୍ତିଗତ ସୁପାରିଶ୍ ପତ୍ରଟିଏ ଲେଖି ଦେଲେ । ଆଜି ସେ ସବୁ ଦେଖିଲେ ସାର୍ ଭରି ମନେ ପଡ଼ନ୍ତି ।

ଖ୍ରୀଷ୍ଟ କଲେଜରୁ ବିଦାୟ ନେଲା ପରେ ଏମ୍.ଏ. ପଢ଼ିବାକୁ ଦରଖାସ୍ତ କରି ସିଟ୍ ପାଇଥିଲେ ମଧ୍ୟ ନାନା କାରଣରୁ ପଢ଼ି ପାରିଲି ନାହିଁ । ଗାଁ ପାଖ ସ୍କୁଲରେ ଶିକ୍ଷକ ଭାବରେ ଯୋଗ ଦେଲି । ୧୯୬୧ରେ ବି.ଇଡ଼ି. ପାଶ୍ କରି ଗଣୀହାଟ ହାଇସ୍କୁଲରେ ଦୁଇ ବର୍ଷ ଶିକ୍ଷକତା କଲା ସମୟରେ ୧୯୬୩ରେ ଏମ୍.ଏ. ପରୀକ୍ଷା ଦେଇ ପାରିଲି । ୧୯୬୪ ଜାନୁୟାରୀ ପହିଲାରୁ ଉତ୍କଳ ବିଶ୍ୱ ବିଦ୍ୟାଳୟ ପରିଚାଳିତ ରେଭେନ୍ସା ସାନ୍ଧ୍ୟ କଲେଜରେ ଅନ୍ୟତମ ଓଡ଼ିଆ ଅଧ୍ୟାପକ ଭାବରେ ଯୋଗ ଦେଲି । ଏହାର କିଛି ଦିନ ପରେ କୌଣସି କାର୍ଯ୍ୟବଶତଃ ଖ୍ରୀଷ୍ଟ କଲେଜ୍ ଆସୁଥାଏ ପଛ ପଟ ଫାଟକ ବାଟେ । ଶ୍ରୀଧର ସାର୍‌ଙ୍କ ସହ ଦେଖା ହୋଇଗଲା । ସାଇକେଲରୁ ଓହ୍ଲାଇ ପ୍ରଣାମ କଲି । ସାର, ପୂର୍ବାପେକ୍ଷା ସାମାନ୍ୟ ଦୁର୍ବଳ ଦିଶୁଥାନ୍ତି । ମୁଁ ଅଧ୍ୟାପକ ହୋଇଥିବା ବିଷୟ ଜାଣିଥିଲେ ସେ । ପ୍ରଶ୍ନ କଲେ; ଅଧ୍ୟାପନା କିମିତି ଚାଲିଛି ?" ଉତ୍ତରରେ ଯେତେବେଳେ ମୁଁ କହିଲି, 'ସାର୍, ଆପଣ ମାନଙ୍କ ଠାରୁ ଯାହା ଶିଖିଛୁ, ସେ ସବୁ ତ ଆମର ମୂଳ ପୁଞ୍ଜି ।' ସାଙ୍ଗେ ସାଙ୍ଗେ ସାର୍ "କୀରତାର୍ଜ୍ଜୁନୀୟମ୍"ର ଶ୍ଳୋକାଂଶଟି ଆବୃତ୍ତି କରି କହିଲେ "ଜାଣିଛ, 'ସର୍ବତ୍ର ଜୟମନ୍ୱିଚ୍ଛେତ୍ ପୁତ୍ରାତ୍ ଶିଷ୍ୟାଦିଚ୍ଛେତ୍ ପରାଜୟଂ ।" ମୋ ମୁଣ୍ଡ ଆହୁରି ନଇଁଗଲା ସେ କଥା ପଦକରେ । ତାକୁ ବି ମୁଁ ହୃଦୟରେ ଲେଖି ନେଲି । ମୋର ଯେତେଦୂର ମନେ ହେଉଛି, ତାହା ହିଁ ଥିଲା ସାର୍‌ଙ୍କ ସହିତ ମୋର ସର୍ବଶେଷ ଚାକ୍ଷୁଷ ସାକ୍ଷାତ । ମାତ୍ର ମୁଁ ସାର୍‌ଙ୍କୁ ବହୁବାର ଭେଟିଛି 'ଗ୍ରନ୍ଥ ମନ୍ଦିର' ପ୍ରକାଶିତ ବିଶ୍ୱ ବିଖ୍ୟାତ ଗ୍ରନ୍ଥମାଳା ମଧ୍ୟରେ । ବର୍ଷକୁ ବର୍ଷ କ୍ରମ ବର୍ଦ୍ଧମାନ ସେହି ପୁସ୍ତକ ମାନଙ୍କର ମର୍ମାନୁବାଦକ ଭାବରେ ସାର୍‌ଙ୍କର କର୍ମ ତତ୍ପରତା, ନିୟମିତତା ଓ ଶ୍ରମପରାୟଣତା ମୋତେ ବିସ୍ମିତ କରିଛି । ଯୁଗ୍ମ ପ୍ରଣେତା ଭାବରେ ସାର୍‌ଙ୍କର 'ସର୍ବସାର ବ୍ୟାକରଣ' ଏବେ ବି ମୋତେ ବ୍ୟାବହାରିକତା ଦୃଷ୍ଟିରୁ ଉପାଦେୟତମ ମନେ ହୁଏ । ଏଇ ସେଦିନ ପୁସ୍ତକ ମେଳାରେ ବହି ଦେଖୁ ଦେଖୁ ନିତାନ୍ତ ଅନାକର୍ଷଣୀୟ ବନ୍ଧାଇ ସଂପନ୍ନ ମୋଟା ବହିଟିଏ ଉଠାଇ ଆଣି ଦେଖେ ତ ଯୁଗ୍ମ ପ୍ରଣେତା ଭାବରେ ସାର୍‌ଙ୍କ କୃତ 'ବିବିଧ କୋଷ' । ଶିକ୍ଷକ ଓ ଅଧ୍ୟାପକ ମାନଙ୍କ ଲାଗି ପୁସ୍ତକଟିର ଆବଶ୍ୟକତା ଦେଖିଲେ ହିଁ ଜାଣି ହେବ । ୧୯୬୬ ମସିହାର ପ୍ରଥମ ଖଣ୍ଡଟିର ପ୍ରଥମ ପ୍ରକାଶନ । ଏ ଯାବତ୍ ବିକ୍ରୀ ଚାଲିଛି । ସେତେବେଳ ତୁଳନାରେ ଦାମ୍‌କୁ ବଢ଼ାଇ ଦିଆ ଯାଇଛି । ଆଗ

ସେଇଟି କିଣିଲି । ସେଥିରେ ଅଛି (୧) 'ଗଣ ବୋଧନୀ-ସଂଖ୍ୟା ବାଚକ ଶବ୍ଦ ମାନଙ୍କର ବିବରଣୀ, ଯଥା-ଅଷ୍ଟ କୁଳାଚଳ, ଷଡ୍ ଦର୍ଶନ ଇତ୍ୟାଦିର ସଂକ୍ଷିପ୍ତ ଓ ନିର୍ଦ୍ଦିଷ୍ଟ ପରିଚିତ, (୨) ନ୍ୟାୟମାଳା ବର୍ଣ୍ଣାନୁକ୍ରମରେ ଓଡ଼ିଆ ପ୍ରବାଦ ଓ ପ୍ରବଚନମାନଙ୍କର ଅର୍ଥ ସହ ବ୍ୟବହାରଗତ ବିଶିଷ୍ଟତାର ଉଦାହରଣ, (୩) ଅର୍ଥ ଓ ପ୍ରୟୋଗ ସହ କୋଡ଼ିଏଟି ଯାକ ଉପସର୍ଗର ବିଶଦ ପରିଚୟ, (୪) ଧାତ୍ୱର୍ଥ ପରିଚୟ, (୫) ଏକାକ୍ଷର କୋଷ ଓ ପରିଶେଷରେ (୬) ପ୍ରତିଶବ୍ଦମାଳା । ଗ୍ରନ୍ଥଟି ବହୁ ଆୟାସ ପ୍ରସୂତ । ଏହାର ବ୍ୟାବହାରିକ ମୂଲ୍ୟ ଓ ଉପଯୋଗିତା ଏକାନ୍ତ ମହାର୍ଘ ।

ବ୍ୟାକରଣ ରଚନାରେ ନିବିଷ୍ଟତା ସାର୍ ବୋଧହୁଏ, ଆହରଣ କରିଥିଲେ ତାଙ୍କର ଶିକ୍ଷକ ଚନ୍ଦ୍ରମୋହନ ମହାରଣାଙ୍କ ଠାରୁ । ଅନର୍ସ ଶ୍ରେଣୀରେ ପଢାଉ ପଢାଉ ସାର୍ ବେଳେ ବେଳେ ଚନ୍ଦ୍ରମୋହନଙ୍କର କବିତା ଆବୃତ୍ତି କରୁଥିଲେ । ମାତ୍ରାଧିକ ବ୍ୟାକରଣ ସଚେତନତା ଭବ ପ୍ରକାଶନରେ ଚନ୍ଦ୍ର ମୋହନଙ୍କୁ ଶୁଚି ବାୟୁଗ୍ରସ୍ତ କରି ପକାଇ ଥିବାରୁ ସେ ସାହିତ୍ୟ ରଚନା କ୍ଷେତ୍ରରେ ଅଧିକ ଦୂର ଅଗ୍ରସର ହୋଇ ପାରି ନ ଥିଲେ ବୋଲି ସାର୍‌ଙ୍କଠାରୁ ଆମେ ଜାଣିବାକୁ ପାଇଥିଲୁ ପ୍ରଥମେ । ସେଥିପାଇଁ ବ୍ୟାକରଣ ରଚନା ଓ ଭାଷା ଚର୍ଚ୍ଚାରେ ନିୟତ ପ୍ରଚେଷ୍ଟ ଥିଲେ ଶ୍ରୀଧର ସାର୍ । ତାଙ୍କର ଅବବୋଧ ଥିଲା ସୁସ୍ପଷ୍ଟ, ମୌଳିକତା ସଂପନ୍ନ ଓ ପ୍ରକାଶ ଭଙ୍ଗୀ ଥିଲା ନିରାଡ଼ମ୍ବର । ଅତି ଗୋରା ନୁହେଁ, ଅତି କଳା ନୁହେଁ ଅତି ଗେଡ଼ା ନୁହେଁ, କି ଅତିଡେଙ୍ଗା ନୁହେଁ, ଅତି ଉଦାସ ନୁହେଁ କି ଅତି ଉତ୍‌ଫୁଲ୍ଲ ନୁହେଁ, ଜଣେ ମଧ୍ୟବର୍ଗର ସଂସାରୀ, କର୍ମତତ୍ପର ପୁରୁଷ ଥିଲେ ଶ୍ରୀଧର ଦାସ । ଜ୍ୟେଷ୍ଠପୁତ୍ର ତାଙ୍କର ଜଗନ୍ନାଥ ପ୍ରସାଦ ଦାସ । ବରିଷ୍ଠ ପ୍ରଶାସକ । ସ୍ୱନାମଧନ୍ୟ କବି, ଗାଳ୍ପିକ, ଚିତ୍ରକର । ପିତାଙ୍କର ଐଶ୍ୱର୍ଯ୍ୟମୟ ପ୍ରତିରୂପ । ଦ୍ୱିତୀୟ ପୁତ୍ର କୃଷ୍ଣପ୍ରସାଦ, ଯିଏ ଥିଲେ ମୋର ସହାଧ୍ୟାୟୀ ଆଇ. ଏ କ୍ଲାସ୍‌ରେ । ସେ ମଧ୍ୟ ଉଚ୍ଚ ପଦବୀରେ ଅବସ୍ଥାପିତ । ସାର୍ ପ୍ରଥମେ ଶିକ୍ଷକ ଥିଲେ, ଥିଲେ ମଧ୍ୟ ଶ୍ରୀକୃଷ୍ଣ ଏକାଡେମୀ, ଜଗତ୍ ସିଂହ ପୁରର ପ୍ରଧାନ ଶିକ୍ଷକ । ଆଜୀବନ ଶିକ୍ଷା ଜଗତରେ ବିଚରଣ କରି ମୋଭଳି ଅକିଞ୍ଚନ ମାନଙ୍କୁ ସ୍ନେହ, ସଦିଚ୍ଛା, ଜ୍ଞାନର ଆଲୋକ ବିତରଣ କରି ଯାଇଛନ୍ତି ସେ ।

ତାଙ୍କରି ଊର୍ଦ୍ଧ୍ୱଗାମୀ ଆତ୍ମା ଉଦ୍ଦେଶ୍ୟରେ ଅନ୍ତରର ସ୍ୱତଃସ୍ଫୂର୍ତ୍ତ ଅଭିବାଦନ ଜଣାଉଛି ।

ଶ୍ରୀ ଗୁରବେ ନମଃ

# ସ୍ୱର୍ଗତ ଅଧ୍ୟାପକ ଶ୍ରୀଧର ଦାସଙ୍କ ସ୍ମରଣରେ

ଶ୍ରୀ ଗୋବନ୍ଧ ଗୁପ୍ତ

ସ୍ୱର୍ଗତ ଶ୍ରୀଧର ବାବୁ ମୋର ଆବାଲ୍ୟ ବନ୍ଧୁ । ଯଦିଓ ମୋଠୁଁ ସେ ଛଅ ବର୍ଷ ବଡ଼ଥିଲେ । ସେ ମୋତେ ସ୍ନେହର ସାନଭାଇ ଭଳି ଦେଖୁ-ଥିଲେ ।

ମୋର ସ୍ୱର୍ଗୀୟ ପିତା ଉପେନ୍ଦ୍ର ନାରାୟଣ ଦତ୍ତଗୁପ୍ତ ଯେତେବେଳେ ପୁରୀ ଜିଲ୍ଲାସ୍କୁଲରେ ହେଡ଼ମାଷ୍ଟର ଥିଲେ, ସେହି ସମୟରେ ଶ୍ରୀଧର ବାବୁ ପ୍ରାଇମେରି ସ୍କୁଲରୁ ପାଶ୍‌କରି ପୁରୀସ୍କୁଲକୁ ଆସିଲେ ଓ ମୋ ପିତାଙ୍କ ସ୍ନେହ ନଜରରେ ପଡ଼ିଗଲେ ।

ମୋର ପିତା ଅସାମାନ୍ୟ ଶିକ୍ଷାବିଦ୍ ଥିଲେ ଏବଂ ତାଙ୍କର ଗୋଟିଏ ତୀବ୍ର ଅନ୍ତର୍ଦୃଷ୍ଟି ଥିଲା । ସେ ସମ୍ଭବେ ଶ୍ରୀଧର ବାବୁଙ୍କ ଭିତରେ କିଛି ଅନୁସନ୍ଧିତ୍ସାର ଆଲୁଅର ସନ୍ଧାନ ପାଇଲେ ଏବଂ ଅବିଳମ୍ବେ ଆପଣା ଲୋକ କରିଦେଲେ ।

ଶ୍ରୀଧର ବାବୁ ମୋର ବଡ଼ଭାଇଙ୍କ ସଙ୍ଗରେ ଏକା ଶ୍ରେଣୀରେ ପଢ଼ୁଥିଲେ ସତ, କିନ୍ତୁ ମୁଁ ବେଶୀ ଘନିଷ୍ଠ ହୋଇ ପଡ଼ିଲି । ତାହାର କାରଣ କିଛିଥିଲା । ଶ୍ରୀଧର ବାବୁ ମେଧାବୀ ଛାତ୍ର ଥିଲେ ଏବଂ ଅଳ୍ପ ସମୟରେ ଓଡ଼ିଆ, ଇଂରେଜୀ ଓ ସଂସ୍କୃତ ଭାଷାରେ ଯଥା ସମ୍ଭବ ବ୍ୟୁତ୍ପତ୍ତି ଦଖଲ କରି ନେଲେ । ଆମ ସାଥିରେ ରହି ବଙ୍ଗଳାରେ ମଧ୍ୟ କିଛି ଅଧିକାର ତାଙ୍କର ଜନ୍ମିଗଲା । ଅନ୍ୟାନ୍ୟ ଭାଷାର ସାହିତ୍ୟ ସହିତ ବଙ୍ଗଳା ଭାଷାର

ମଧ୍ୟ ବହୁ କାବ୍ୟ, ନାଟକ ଉପନ୍ୟାସ ପଢ଼ିପକେଇଲେ । ତାଙ୍କ ସାହଚର୍ଯ୍ୟରେ ମୋର ଅଙ୍କୁରିତ ସାହିତ୍ୟ ପିପାସା ପଲ୍ଲବିତ ହେଲା । ମୁଁ ଏତେ ମେଧାବୀ ଓ ଭାଷାଜ୍ଞାନର ଅଧିକାରୀ ନଥିଲି । ବିଶେଷତଃ ସଂସ୍କୃତ ପ୍ରାୟ ଅଜଣା । କିନ୍ତୁ ବଙ୍ଗଳା ଓ ଇଂରେଜୀ ସାହିତ୍ୟ ପ୍ରତି ଆକୃଷ୍ଟ ହୋଇଥିଲି । ବିଶେଷତଃ ବଙ୍ଗଳା ନାଟକ ଏବଂ ଉଦ୍ଦୀପନା ପୂର୍ଣ୍ଣ ଇଂରେଜୀ ଭାଷାର ଗଳ୍ପ ଓ ଉପନ୍ୟାସ ସାହିତ୍ୟରେ । ତା ଛଡ଼ା ବଙ୍ଗଳାରେ କବିତା ରଚନାର ଆବେଗ ଜନ୍ମିଥାଏ । ଶ୍ରୀଧର ବାବୁଙ୍କର ସାହଚର୍ଯ୍ୟରେ ଓଡ଼ିଆର ପ୍ରାଚୀନ ଅଳଙ୍କାର ସଂସ୍କୃତ ଗୀତିନାଟ୍ୟ ଓ କାବ୍ୟ ମୋ ମନରେ ଧ୍ୱନି ଜଗାଉଥିଲା । ମଧ୍ୟଯୁଗର ଓଡ଼ିଆ ନାଟକ ମଧ୍ୟ ଭଲ ଲାଗୁଥିଲା । ମାତ୍ର କେବେ ହେଲେ ଆଜି ପର୍ଯ୍ୟନ୍ତ ପ୍ରକୃତରେ ଓଡ଼ିଆ ପଢ଼ିନାହିଁ । ଅକ୍ଷର ପରିଚୟ ମଧ୍ୟ ହୋଇ ନାହିଁ । ମୋର ସ୍କୁଲ ଜୀବନରେ ବାଧ୍ୟତାମୂଳକ ଭାବରେ ଓଡ଼ିଆ ପଢ଼ିବାକୁ ପଡ଼ୁନଥିଲା । କାରଣ ଭାଷା ଛଡ଼ା ପ୍ରାୟ ସବୁ ବିଷୟ ବଙ୍ଗଳାରେ ପଢ଼ା ହେଉଥିଲା ।

ସୁତରାଂ ମୋର ପ୍ରକୃତ ଇଂରେଜୀ, ବଙ୍ଗଳା ଓ ବିଶେଷ କରି ଓଡ଼ିଆ ଭାଷା ଓ ସାହିତ୍ୟର ଅନୁରାଗ ଶ୍ରୀଧର ବାବୁଙ୍କର ଦୀକ୍ଷା । ଓଡ଼ିଆ ଭାଷା ଏକ ପ୍ରକାର ଶ୍ରୁତି ।

ବଂଶାନୁକ୍ରମେ ମୋର ପିତାମହଙ୍କ ପର୍ଯ୍ୟନ୍ତ ସମସ୍ତେ ଗୁରୁକୂଳ ବା ତା'ର ତତ୍କାଳୀନ ସଂସ୍କରଣ ଚଟ୍ଟଶାଠୀ–ଅନୁଗାମୀ ଥିଲେ । ସେହି ଭାବରେ ମୋର ପିତା ମଧ୍ୟ ଅନୁପ୍ରାଣିତ ଥିଲେ । ଶ୍ରୀଧର ବାବୁ ଓ ଆମେ ପିଲାମାନେ ପିତୃଦେବଙ୍କୁ ଗୁରୁର ଗୁରୁତ୍ୱ ଦେଉଥିଲୁ । ଆଜି ମଧ୍ୟ ମୋର ଗୁରୁ,–ମୋର ପିତୃଦେବ । ସେହି ସୂତ୍ରରେ ଶ୍ରୀଧର ବାବୁ ମୋହର ଗୁରୁ ଭାଇ । ମୋ ବାପାଙ୍କ ପ୍ରଣୀତ Folk tales of Orissaର 'Acknowledgement' ରେ ମୁଁ Prof. Sridhar Das ଙ୍କୁ ଗୁରୁଭାଇ ବୋଲି ସ୍ୱୀକୃତି ଦେଇଛି ।

ଶ୍ରୀଧର ବାବୁଙ୍କ ସାଥିରେ ବନ୍ଧୁତ୍ୱ ବନ୍ଧନର ଆଉ ଗୋଟିଏ ସୂତ୍ର ଆମର ସ୍ୱାଦେଶିକତା– ଯାହାର ଜନ୍ମ ହୁଏ ଗାନ୍ଧିଜୀଙ୍କର ଅସହଯୋଗ ଆହ୍ୱାନରୁ । ସେହି ଡାକରେ ଶ୍ରୀଧର ବାବୁ ମଧ୍ୟ କିଛିଦିନ ପାଇଁ ଜିଲ୍ଲାସ୍କୁଲ

ଛାଡ଼ି ଯାଇଥିଲେ । ତାଙ୍କ ଗୁରୁ ମୋର ପିତୃଦେବଙ୍କର ସେଥିରେ ଅସମ୍ମତି ନଥିଲା । ମାତ୍ର ସେ ତାଙ୍କ ଛାତ୍ରମାନଙ୍କୁ ସରକାରୀ ସ୍କୁଲ ଛାଡ଼ିଲେ ମଧ୍ୟ ପଢ଼ା ଛାଡ଼ିବାକୁ ମନା କରିଥିଲେ,— ଏପରି କି ବିକଳ୍ପ ବିଦ୍ୟାଳୟ ହିସାବରେ ଗୋପବନ୍ଧୁଙ୍କର ସତ୍ୟବାଦୀ ସ୍କୁଲରେ ଯୋଗ ଦେବାକୁ ପରାମର୍ଶ ଦେଲେ ।

ମାତ୍ର ଅଧିକାଂଶ ଛାତ୍ର ପୁଣି ପୁରୀ ଜିଲ୍ଲା ସ୍କୁଲକୁ ଫେରି ଆସିଲେ, ଶ୍ରୀଧର ବାବୁ ମଧ୍ୟ । ମୋର ପିତାଙ୍କ ସ୍କୁଲର ଆଦର୍ଶ ତାଙ୍କର ପ୍ରିୟଥିଲା ।

କିନ୍ତୁ ଉତ୍କଳମଣିଙ୍କର ତପୋବନ ସ୍କୁଲର ମାଧୁର୍ଯ୍ୟର ଗୋଟାଏ ଆକର୍ଷଣ ରହିଗଲା,— ଯାହା ଶ୍ରୀଧର ବାବୁଙ୍କ ମଧ୍ୟଦେଇ ମୋତେ ମଧ୍ୟ ସଂକ୍ରମଣ କଲା ।

୧୯୧୯ ଖ୍ରୀ:ଅବ୍ଦରେ ପୁରୀ ଜିଲ୍ଲାରେ ଭୟଙ୍କର ଦୁର୍ଭିକ୍ଷ ଓ ମହାମାରୀ ହୋଇଥାଏ । ଗ୍ରୀଷ୍ମ ଅବକାଶ ବେଳେ ମୁଁ, ମୋର ପ୍ରାୟ ସମ ବୟସ୍କ ଓ ସମ୍ପର୍କିତ ଭାଇ ଓ ଶ୍ରୀଧର ବାବୁ,— ଆମେ ମୋର ପିତାଙ୍କ ସହର ବାହାରେ ଯାଇଥିବା ବେଳେ, ଏକଜୁଟ ହୋଇ ସତ୍ୟବାଦୀ ସ୍କୁଲ ଆଡ଼େ ବୁଲିବାକୁ ବାହାରି ପଡ଼ିଲୁ, ଅବଶ୍ୟ ପଦବ୍ରଜରେ । ଦିନ ଯାକ ଉପବନରେ କଟେଇ ଅପରାହ୍ନ ବେଳେ ଫେରିବାକୁ ବାହାରିଲୁଁ । ବାଟରେ ସନ୍ଧ୍ୟା ହୋଇଗଲା । ବାଟ ଭୁଲି ଗୋଡ କ୍ଲାନ୍ତ,— ତା'ପରେ ରାସ୍ତା କଡରେ ଭୟଙ୍କର ଦୃଶ୍ୟ । ସ୍ଥାନେ ସ୍ଥାନେ ବହୁ ମୃତ ଦେହ—ଅନଶନ ଓ କଲେରାରେ ମୃତ୍ୟୁ କବଳିତ । କୁକୁର—ଶିଆଳ ଟଣା—ଟଣି କରୁଛନ୍ତି । ଯିବା ଆସିବାରେ ୨୨ ମାଇଲ — ଆମର ଯୋତା ଛିଣ୍ଡି ଯାଇଥାଏ, ଆମେ ସାନ ପିଲା ବିକ୍ଷଣ ପରିଶ୍ରାନ୍ତ — ପିପାସାରେ କାତର । ଶ୍ରୀଧର ବାବୁ ଆମ ଅବସ୍ଥା ଦେଖି କାତର । ଯାହା ହେଉ ଯେତେବେଳେ ଘରେ ପହଁଞ୍ଚିଲୁ, — ସେତେବେଳେ ରାତି ୮ଟା ।

ଏହି ସମୟରେ ମୋର ସାହିତ୍ୟ ପ୍ରୀତି ବଢି ଚାଲିଲା ଶ୍ରୀଧର ବାବୁଙ୍କ ଉତ୍ସାହରେ । ଦେଶୀ — ବିଦେଶୀ ଅନୁବାଦ ସାହିତ୍ୟରୁ ବିଶେଷତଃ ଉଦ୍ଦୀପନା ପୂର୍ଣ୍ଣ ଓ ଆଦର୍ଶ ବ୍ୟଞ୍ଜକ କାହାଣୀ, ଗଳ୍ପ ପ୍ରଚୁର ପଢୁଥିଲି । ଗୋଟାଏ ଦୁଃସାହସିକ ରଚନା କରି ପକେଇଲି । ଶ୍ରୀଧର ବାବୁଙ୍କର

ଉତ୍ସାହ ପାଇ ଟଲ୍‌ଷ୍ଟୟଙ୍କର ଗୋଟିଏ ବିଖ୍ୟାତ ଗଳ୍ପ 'Ivan the fool' କୁ ବଙ୍ଗଳା ନାଟକ ରୂପରେ ଲେଖିଲି । ସେତେ ବେଳେ ମୋର ବୟସ ୧୨ ବର୍ଷ । ଏ ଗଳ୍ପଟି ଯେଉଁ ଗଳ୍ପ ସମଷ୍ଟିର ଅନ୍ତର୍ଗତ– ସେ ବହିର ନାଁ । 'Twenty three tales of Tolstoy'

ଏହାର ବହୁଦିନ ପରେ ଶ୍ରୀଧରବାବୁ ଏହି ବହିଟିକୁ ସଂପୂର୍ଣ୍ଣ ଭାବରେ ଓଡ଼ିଆରେ ଅନୁବାଦ କରି 'Soviet Land Award' ପାଇଥିଲେ ।

ସବୁଠୁଁ ବଡ ସଂଯୋଗ ଓ ସାହାଯ୍ୟ ତାଙ୍କଠୁଁ ପାଇଥିଲି, ମୋର ପିତାଙ୍କର ପ୍ରଣୀତ 'Folk tales of Orissa' ର ଦ୍ୱିତୀୟ ସଂସ୍କରଣ କରିବାରେ । ଏହି ଉପ ଭୋଗ୍ୟ ଗଳ୍ପ ସମଷ୍ଟି ପ୍ରଥମ ମୁଦ୍ରଣ ୧୯୨୨ ରେ ହୋଇଥିଲା । ମାତ୍ର ୩ ବର୍ଷ ପରେ ସଂପୂର୍ଣ୍ଣ ଭାବରେ ନିଃଶେଷିତ ହୋଇ ଯାଇଥିଲା । ମୋର ଚାକିରୀ ଜୀବନରେ ସେ ବହି ବହୁ ଚେଷ୍ଟା ସତ୍ତ୍ୱେ କେଉଁଠୁ ମିଳିଲା ନାହିଁ । –ଅତି କଷ୍ଟରେ ଗୋଟିଏ ଗ୍ରାମ ସ୍କୁଲ libraryରୁ ମିଳିଲା ଏବଂ ତାହା 'ଟାଇପ୍' କରେଇ ଛପେଇ ବାର ଉଦ୍ୟୋଗ କଲି । ମାତ୍ର ୧୭ ବର୍ଷ ଚେଷ୍ଟା କରି ସଫଳ ହୋଇ ନାହିଁ ।

ଏହି ସମୟରେ ଶ୍ରୀଧର ବାବୁଙ୍କ ସହ ସଂଯୋଗ ନାନା କାରଣରୁ ହଜି ଯାଇଥାଏ । –ହଠାତ୍ ତାଙ୍କର ସଂସ୍ପର୍ଶ ମିଳିଲା । ସେତେବେଳକୁ ସେ ଏବଂ ମୁଁ ଦୁହେଁ ଅବସର ପ୍ରାପ୍ତ । ମୁଁ ତାଙ୍କର ଶରଣାପନ୍ନ ହେଲି । ସେ ଅତି ଆଦରରେ ତାଙ୍କର ଗୁରୁଙ୍କର ବହିର ଗୁରୁ ଦାୟିତ୍ୱ ଗ୍ରହଣ କଲେ । ଦୁଇବର୍ଷ ଅକ୍ଲାନ୍ତ ପରିଶ୍ରମ କରି ଗୋଟିଏ ଛୋଟିଆ ହାତ ପ୍ରେସରେ ଛପେଇ ମୋ ହାତରେ ଟେକି ଦେଲେ । ଏତେ ଉତ୍ସାହ, ଯତ୍ନ ଓ ସାହାଯ୍ୟ କାହାରି ପାଖରୁ ପାଇ ନାହିଁ । ଏହି ବହି ବର୍ତ୍ତମାନ ଓଡ଼ିଶାରେ ଏବଂ ବାହାରେ ମଧ୍ୟ ବହୁ ଜନ ସମାଦୃତ ।

ଏହା ପରେ ମଧ୍ୟ ମୁଁ ଦୂରରେ ରହିବାରୁ ଓ ଯାତାୟାତରେ ସୁବିଧା ନଥିବା ଯୋଗୁଁ ତାଙ୍କ ସହ ସଂଯୋଗ ନଥିଲା । କେବଳ ଅଳ୍ପଦିନ ତଳେ ପୁଣି ଦେଖା ହେଲା ଓ ସଂଯୋଗ ରହିଲା– କିନ୍ତୁ ସେତେବେଳେ ପ୍ରାୟ ସେ ଶଯ୍ୟାଶାୟୀ । ସେହି ସମୟରେ ତାଙ୍କ ପାଖରୁ ଗୋଟିଏ

ପୁରୁଣା ଭକ୍ତିଗ୍ରନ୍ଥ 'ଦାର୍ଢ୍ୟତା ଭକ୍ତି' ଆଣିଥିଲି ବଙ୍ଗଳାରେ ସଂପୂର୍ଣ୍ଣ ଅନୁବାଦ କରିବା ପାଇଁ । ସେ କାମ ଆଜିଯାଏ ସଂପୂର୍ଣ୍ଣ କରିପାରି ନାହିଁ । ବହିଟି ମୋ ପାଖରେ ରହି ଯାଇଛି ।

ବାର୍ଦ୍ଧକ୍ୟରେ ତାଙ୍କର ଅନେକ, [illegible] କଠିଣ ଅସୁସ୍ଥତା ଓ ଦୃଷ୍ଟିଶକ୍ତି ହୀନତା ହେଲେ ମଧ୍ୟ ତାଙ୍କର ମାନସିକ ଶକ୍ତି ସଂପୂର୍ଣ୍ଣ ବଜାୟ ଦେଖୁଛି– ସୁତରାଂ ତାଙ୍କର ହଠାତ୍ ବିୟୋଗ ସମ୍ବାଦରେ ସ୍ତବ୍ଧ ହୋଇଗଲି ।



# ସଂଗ୍ରାମ ଓ ସୃଷ୍ଟିର ସମନ୍ୱିତ ପ୍ରତିଭା

ଡକ୍ଟର ଅରବିନ୍ଦ ଗିରି

ଶ୍ରୀଧର ଦାସଙ୍କ ନାମ ଶୁଣିଥିଲି ଜଣେ ଛାତ୍ର ବତ୍ସଳ ଅଧ୍ୟାପକ ଭାବରେ । ଅଧ୍ୟାପନାର ନିଷ୍ଠା, ଆଦର୍ଶ ଚରିତ୍ରବତା, କଠୋର କାର୍ଯ୍ୟଦକ୍ଷତା ଏକ ନିଷ୍ଠ ସାହିତ୍ୟ ସାଧନାହିଁ ତାଙ୍କୁ ଓଡ଼ିଶାର ଜଣେ ସ୍ୱନାମଧନ୍ୟ ଅଧ୍ୟାପକ ହେବାର ଗୌରବ ପ୍ରଦାନ କରିଛି ।

କଲେଜରେ ଫାଷ୍ଟ୍ ୟିଅର ପଢ଼ିଲାବେଳେ 'ଓଡ଼ିଆ ଅଭିଧାନ'ଟିଏ କିଣିବାର ବିଶେଷ ପ୍ରୟୋଜନୀୟତା ଅନୁଭବ କଲି । ବଜାରରେ ମିଳୁଥିବା ଦୁଇ ତିନି ପ୍ରକାର ଅଭିଧାନ ମଧ୍ୟରୁ କାହିଁକି କେଜାଣି ତାଙ୍କର "ନବଅଭିଧାନ"ଟିଏ କିଣିବା ପାଇଁ ବିଶେଷ ଆଗ୍ରହ ସୃଷ୍ଟି ହୋଇଥିଲା । ବହିଟି ଏବେବି ମୋର ଅଧ୍ୟାପନା ଜୀବନର ଏକ ସହାୟକ ପୁସ୍ତକ ଭାବରେ ବହୁ ଉପକାରରେ ଲାଗୁଛି ।

ଘଟଣା କ୍ରମରୁ ହେଉ ବା ବିଧିର ବିଧାନରୁ ହେଉ ତାଙ୍କ ସହିତ ପରେ ମୋର ଏକ ସୁସମ୍ପର୍କ ପ୍ରତିଷ୍ଠା ହୋଇଥିଲା । ସେତେବେଳେ ତାଙ୍କ ବୟସର ସୂର୍ଯ୍ୟ ଅସ୍ତଗାମୀ ପ୍ରାୟ । ଅଙ୍ଗ ଶିଥିଳତା, ଦୃଷ୍ଟିଶକ୍ତି ହୀନତା, ଶ୍ରୁତି ଓ ସ୍ମୃତି ଶକ୍ତି ହୀନତା ହେତୁ ସୃଷ୍ଟି ଚେତନାରେ ସେ ଏକପ୍ରକାର ସ୍ଥବିର ପାଲଟିଥିଲେ । ବହୁ ନିଃସଙ୍ଗତା ଓ ନିଃସହାୟତା ଅନୁଭବ କରୁଥିବାର ଦେଖିଛି । କୌଣସି ଆଗନ୍ତୁକ, ଶୁଭେଚ୍ଛୁ ଆସି କଥାବାର୍ତ୍ତା ଟିକେ କଲେ ସେ ପ୍ରାୟ ତାଙ୍କୁ ଛାଡ଼ିବାକୁ ନାରାଜ ।

ଗବେଷଣା କାର୍ଯ୍ୟରେ ଥିବାବେଳେ ବିଶିଷ୍ଟ ଗାନ୍ଧିବାଦୀ ସମାଜସେବୀ ଶ୍ରୀଯୁକ୍ତ ଶରତ ଚନ୍ଦ୍ର ମହାରଣାଙ୍କ ଠାରୁ ଜାଣିଲି ଅଧ୍ୟାପକ ଶ୍ରୀଧର ଦାସ ହେଉଛନ୍ତି ସ୍ୱର୍ଗତ ଚନ୍ଦ୍ର ମୋହନ ମହାରଣାଙ୍କ ପୁରୀ ଜିଲ୍ଲା ସ୍କୁଲର ଛାତ୍ର । ତାଙ୍କୁ ସାକ୍ଷାତ୍ କରିବାର ସୁଯୋଗ ପାଇଲି । ସେତେବେଳେ ଚନ୍ଦ୍ରମୋହନଙ୍କ କୌଣସି ପୁରାତନ ଛାତ୍ରଙ୍କୁ ଭେଟିବାରେ ଖୁବ୍ ଆତ୍ମତୃପ୍ତି ଅନୁଭବ କରୁଥିଲି । ବହୁ କଷ୍ଟରେ 'ଚନ୍ଦ୍ରମୋହନ ପରିକ୍ରମା' ପାଇଁ ତାଙ୍କଠାରୁ ଏକ ପ୍ରବନ୍ଧ ମଧ୍ୟ ଆଣିଥିଲି । ତା'ପରେ ତାଙ୍କ ସହିତ ଏକାଧିକ ପତ୍ର ବିନିମୟ ଘଟିଥିଲା । ଚନ୍ଦ୍ରମୋହନଙ୍କ ସୃଷ୍ଟି ପ୍ରତିଭା, ଆଦର୍ଶ ଶିକ୍ଷକ ଜୀବନ ତଥା ତାଙ୍କ ଛାତ୍ର ଜୀବନର ସ୍ମୃତି ସଙ୍କେତ ସ୍ୱରୂପ କେତେଖଣ୍ଡ ଚିଠି ମଧ୍ୟ ସେ ଦେଇଥିଲେ । ତାଙ୍କ ପ୍ରଥମ ଚିଠିଟି ସେ ଲେଖିଥିଲେ–

୧୧ । ୨ । ୮୦
ଦେଉଳସାହି
କଟକ–୭୫୩୦୦୮

ଶ୍ରଦ୍ଧେୟ ଅରବିନ୍ଦ,

ଚିଠିଟି ପାଇ ଅତ୍ୟନ୍ତ ଆନନ୍ଦିତ ହେଲି । ମୁଁ ପୁରୀଜିଲ୍ଲା ସ୍କୁଲର ଛାତ୍ର ଥିଲା ବେଳେ ( ୧୯୧୯ ) ଚନ୍ଦ୍ରମୋହନ ବାବୁ ଆମର ହେଡ୍ ମାଷ୍ଟର ହୋଇ ଆସିଥିଲେ । ମାତ୍ର ୩/୪ ମାସ ପରେ ବାଲେଶ୍ୱରକୁ ବଦଳି ହୋଇ ଯାଇଥିଲେ । ସେ ଅତି କଠୋର ଥିଲେ ହେଁ ମୋ ପ୍ରତି ସଦୟ ଥିଲେ । ତାଙ୍କ ସ୍ମୃତି ମୋର ଜାଗ୍ରତ ରହିଛି । ତାଙ୍କର କଲେଜ ପଢ଼ା ସମୟର ଲେଖା କବିତା ବହି 'ଅବକାଶ' ମିଳୁନାହିଁ । ଶରତଙ୍କୁ ( ଭୂଦାନ କର୍ମୀ ) ପଚାରି ଥିଲି ତାଙ୍କ ପାଖେ ନାହିଁ ବୋଲି ଶୁଣିଲି । ତାଙ୍କ ଭାଇ ଲୋକନାଥ ରେମୁଣା ହାଇସ୍କୁଲରେ ଶିକ୍ଷକ ଥିଲେ । ଏବେ ସେ କେଉଁଠି ଜାଣେ ନାହିଁ । ଲୋକନାଥ ପୁରୀ ଜିଲ୍ଲା ସ୍କୁଲରେ ମୋର ସହପାଠୀ ଥିଲେ । ତାଙ୍କଠାରୁ ସନ୍ଧାନ ନେବା ଆବଶ୍ୟକ । 'କଥାବଳୀ' ବହିରେ ତାଙ୍କର ଋତୁ ବର୍ଣ୍ଣନା ମୂଳକ ଛଅଟି କବିତା ଥିଲା । ମୋ ପାଖରେ ଖଣ୍ଡିଏ 'କଥାବଳୀ' ଥିଲା । ତାକୁ ନୟାଗଡ଼ ଦାଶରଥି ପଟ୍ଟନାୟକ ତାଙ୍କ ଉଦୟପୁର ପାଠାଗାରକୁ ନେଇଯାଇ ଅଛନ୍ତି । ପୁରୁଣା ଉତ୍କଳ ସାହିତ୍ୟରେ ତାଙ୍କର କେତେକ ଲେଖା ଅଛି । ଗୋଟିଏ ଲେଖା ହେଉଛି– ଉତ୍କଳ ସାହିତ୍ୟ ସମାଜରେ ପ୍ରଦତ୍ତ

ତାଙ୍କ ଅଭିଭାଷଣ; ଅନ୍ୟ ଗୋଟିଏ ହେଉଛି 'ଫକୀରମୋହନ' ସଂଖ୍ୟାରେ ଲିଖିତ ପ୍ରବନ୍ଧ । ଏ ଦିଓଟି ମୋର ସ୍ପଷ୍ଟ ମନେ ଅଛି । ବୋଧହୁଏ, 'ସାହିତ୍ୟ ଦର୍ପଣକାର' ବିଶ୍ୱନାଥଙ୍କ ବିଷୟରେ ସେ ଗୋଟିଏ ପ୍ରବନ୍ଧ ଲେଖିଥିଲେ । ତାଙ୍କର 'ବ୍ୟାକରଣ ସୋପାନ' ଦୁଇଭାଗ ସହିତ ଛାତ୍ର ସମାଜ ସୁପରିଚିତ ।

ତାଙ୍କର ସ୍ୱାକ୍ଷର ମୋର ଖଣ୍ଡିଏ ପ୍ରାଇଜ ବହିରେ ଥିଲା । ସେଇଟି ମୁଁ ଲେକଚରର କୃଷ୍ଣବିହାରୀ ଦାଶଙ୍କୁ ଦେଇଥିଲି ବିଶ୍ୱଭାରତୀରେ ରଖିବାପାଇଁ । ତାଙ୍କର ହାତଲେଖା ମୋ ପାଖରେ କିଛିନାହିଁ ।

ତାଙ୍କର ବ୍ୟକ୍ତିଗତ ଜୀବନ ସମ୍ବନ୍ଧରେ ଯାହା କିଛି ସ୍ମରଣ ଅଛି ଲେଖି ପଠାଇ ପାରିବି । ସେଉଳି ଲେଖା କିଛି କାମରେ ଲାଗିବ କି ?

ମୁଁ ୭୯ ବର୍ଷରେ ପାଦ ଦେଲିଣି । ସ୍ମୃତିଶକ୍ତି କ୍ଷୀଣ ହୋଇ ଆସିଲାଣି । କାର୍ଯ୍ୟ କରିବା ବା ଶରୀର ଚିନ୍ତା କରିବା ସମ୍ଭବ ହେଉନାହିଁ । ତଥାପି ମୋ ଦ୍ୱାରା ଯାହା ସାହାଯ୍ୟ ସମ୍ଭବ ତାହା କରିବାକୁ ପ୍ରସ୍ତୁତ ଅଛି ।

ପତ୍ରସହିତ ଏ Inland Letter ଖଣ୍ଡି ପାଇ ଦୁଃଖିତ ହୋଇଛି । ସ୍ୱଚ୍ଛନ୍ଦରେ ଚିଠି ଦେଲେ ମୁଁ ସମର୍ଥ ଥିଲେ ନିଶ୍ଚୟ ଉତ୍ତର ଦେବି । କେବେ ଦେଖାହେଲେ ବିଶେଷ ଆନନ୍ଦ ଅନୁଭବ କରିବି । ପତ୍ର ଆଶାରେ ରହିଲି ।

। ଇତି ।

ତୁମର

ଶ୍ରୀଧର

ଉପରୋକ୍ତ ଚିଠିର ଠିକ୍ ୧୫ ଦିନ ପରେ ସେ ଅନ୍ୟଏକ ପତ୍ରରେ ଲେଖିଥିଲେ—

ଦେଉଳସାହି, କଟକ

କଲ୍ୟାଣୀୟ ଅରବିନ୍ଦ, ୨୬ । ୨ । ୮୦

ଆଜି ଚିଠିଟି ପାଇବା ମାତ୍ରେ ମୁଁ ମୋର ଗୋଟିଏ ଭୁଲକୁ ସଂଶୋଧନ କରିବା ଉଦ୍ଦେଶ୍ୟରେ ଏ ଚିଠିଟି ଲେଖୁଛି । ମୁଁ ଭୁଲରେ 'ଅବକାଶ' ବୋଲି ଯାହା ଲେଖିଥିଲି, ତାହା ଅବକାଶ ନହେଁ 'ନବୋଦ୍ୟମ'

ମୁଁ ଭ୍ରମ ବଶତଃ ତୁମକୁ ବୃଥା ହଇରାଣରେ ପକାଇଛି । 'ନବୋଦ୍ୟମ' ମିଳିଥିବା ଆନନ୍ଦର କଥା । 'ଅବକାଶ' ବୋଲି କିଛି ସେ ଲେଖୁ ନ ଥିଲେ । ଚନ୍ଦ୍ରମୋହନ ବାବୁ ଖଣ୍ଡିଏ ଅଭିଧାନ ଆରମ୍ଭ କରିଥିବା କଥା ଆମେ ସେ ସମୟରେ ମଧ୍ୟ ଶୁଣିଥିଲୁଁ; କିନ୍ତୁ ତାଙ୍କ ନିଜ ମୁହଁରୁ ଶୁଣିନାହୁଁ । ତେବେ ତାହା ସମ୍ପୂର୍ଣ୍ଣ ହୋଇ ନଥିଲା ବୋଲି ବିଶ୍ୱାସ ।

ଆଉ ଗୋଟିଏ କଥା ମନେ ପଡ଼ିଲା ବୋଲି ଲେଖୁଛି । ରାଧାନାଥ ବାବୁଙ୍କ 'ମହାଯାତ୍ରା'ର କେତେକ ଅଂଶ ଇଂରେଜ ସରକାରଙ୍କ ବିରୋଧୀ ବୋଲି କେହି ସରକାରଙ୍କୁ ଜଣାଇବାରୁ ସେ ତାକୁ ନଷ୍ଟ କରି ଦେଇଥିଲେ । ଆମେ ଶୁଣିଥିଲୁ ଯେ ଚନ୍ଦ୍ରମୋହନ ବାବୁହିଁ ସରକାରଙ୍କ ଦୃଷ୍ଟିକୁ ଏହା ଆଣିଥିଲେ । କିନ୍ତୁ ସେ ତାହା କରିନଥିଲେ ବୋଲି କହିଥିଲେ । ସେ ରାଧାନାଥଙ୍କ ଗୁଣଗ୍ରାହୀ ଭକ୍ତ ଥିଲେ । 'ଚିଲିକା'ର ପ୍ରଥମ ଦୁଇଧାଡ଼ି ବୁଝାଇବାରେ ଥରେ ସେ ଘଣ୍ଟାଏ ସମୟ ନେଇଥିଲେ– ଅବଶ୍ୟ ଆମ ଶ୍ରେଣୀରେ ନୁହେଁ, ଆମ ଉପର ଦଶମ ଶ୍ରେଣୀରେ ।

ମୋର ଭ୍ରମ 'ନବୋଦ୍ୟମ' ସ୍ଥଳରେ 'ଅବକାଶ' ଲେଖିବା ତୁମକୁ ଅଯଥା କଷ୍ଟ ଦେଇଥିବ । କ୍ଷମା କରିବ ।

ଅନ୍ୟାନ୍ୟ ବିଷୟରେ ପରେ ଲେଖିବି । ମୁଁ ବର୍ତ୍ତମାନ ଶାରୀରିକ ତଥା ମାନସିକ ଶକ୍ତିର ଅଭାବ ଅନୁଭବ କରୁଛି ।

ତୁମ୍ଭର

ଲକ୍ଷ୍ମୀଧର ଦାସ

ପ୍ରକାଶିତ 'ଚନ୍ଦ୍ରମୋହନ ପରିକ୍ରମା' ପୁସ୍ତକରେ ସନ୍ନିବିଷ୍ଟ 'ଗୁରୁଦେବ ଚନ୍ଦ୍ରମୋହନ' ପ୍ରବନ୍ଧରେ ସ୍ୱୀୟ ଛାତ୍ର ଜୀବନର ସ୍ମୃତି ସେ ସ୍ମରଣ କରିଛନ୍ତି । ଏହା ତାଙ୍କ ପୁରୀ ଜିଲ୍ଲା ସ୍କୁଲର ଘଟଣା । ଚନ୍ଦ୍ରମୋହନ ଦ୍ୱିତୀୟଥର ପୁରୀ ଜିଲ୍ଲା ସ୍କୁଲର ପ୍ରଧାନ ଶିକ୍ଷକ ଦାୟିତ୍ୱ ନେବାର ଅଳ୍ପଦିନ ପରେ ଥରେ ସଂସ୍କୃତ କ୍ଲାସ ପରିଦର୍ଶନ କଲେ । ନବମ କ୍ଲାସରେ ସଂସ୍କୃତ ପଢ଼ାଉଥିଲେ ପଣ୍ଡିତ ଜଗନ୍ନାଥ ରଥ, ଯେ କି କଟକ ଟ୍ରେନିଂ ସ୍କୁଲରେ ଚନ୍ଦ୍ରମୋହନଙ୍କ

ଛାତ୍ରଥିଲେ । ଚନ୍ଦ୍ରମୋହନ ପିଲାମାନଙ୍କୁ ସଂସ୍କୃତ ପାଠ୍ୟ ବିଷୟରୁ କେତୋଟି ବାକ୍ୟ ପଚାରିଲେ । ତା ସହିତ ବାକ୍ୟ ମଧ୍ୟରେ ଥିବା ଏକବଚନ ଅର୍ଥରେ ବହୁବଚନ ପ୍ରୟୋଗର କାରଣ ମଧ୍ୟ ଜିଜ୍ଞାସା କରି କିଛି ଉତ୍ତର ପାଇ ନ ଥିଲେ । ଏ ପ୍ରସଙ୍ଗରେ ଶ୍ରୀଧର ବାବୁ ଲେଖିଛନ୍ତି, "ପଛ ବେଞ୍ଚରୁ ମୁଁ ଉତ୍ତର କଲି, 'ସାର୍ ମାନ୍ୟାର୍ଥେ ବହୁ ବଚନ' । ତାହାପରେ ଆଦେଶ ହେଲା, 'you come here', ସେ ଗମ୍ଭୀର ନିର୍ଘୋଷରେ ମୋ ହୃତ୍‌କମ୍ପ । ଥରି ଥରି ଟେବୁଲ ପାଖକୁ ଆସିଲି । ଏଣିକି ତାଙ୍କର ପ୍ରଶ୍ନର ଗତି ବଦଳିଲା । ଘର କେଉଁଠି, ଘରେ କିଏ କିଏ ଅଛନ୍ତି, ଆର୍ଥିକ ଅବସ୍ଥା କିପରି ପୂର୍ବରୁ କେଉଁଠାରେ ପଢ଼ିଥିଲ ଇତ୍ୟାଦି । ମୁଁ ଭୀତ ଚକିତ ଭାବରେ ପ୍ରଶ୍ନ ଗୁଡ଼ିକର ଉତ୍ତର ଦେଲି । ତା' ପରେ ମୂଳ ପ୍ରଶ୍ନକୁ ଫେରି ଆସି ପଚାରିଲେ, ତୁମ୍ଭେ ମାନ୍ୟାର୍ଥ କହିଲ; ଆଚ୍ଛା କି ପଦ ?" ମୁଁ ଉତ୍ତର ଦେଲି, 'ବିଶେଷଣ' । ପୁଣି ପ୍ରଶ୍ନ ହେଲା 'ମାନ୍ୟର ଅର୍ଥ କଅଣ ?" ମୋର ଉତ୍ତର, 'ମାନ ଅର୍ଥାତ୍ ସମ୍ମାନର ଯୋଗ୍ୟ ।' ପ୍ରଶ୍ନ, ତେବେ ଅର୍ଥଟା ହେଉଛି ସମ୍ମାନର ଯୋଗ୍ୟ ? ଏତେବେଳକୁ ମୋର ଭୁଲ ବୁଝି ପାରିଲି । ମୁଁ କହିଲି 'ସାର୍, ମାନ୍ୟାର୍ଥେ ହେବ ନାହିଁ, ସମ୍ମାନାର୍ଥେ ହେବ ।" ହଁ ସମ୍ମାନାର୍ଥେ କହିବ, ଗୌରବାର୍ଥେ ମଧ୍ୟ କହିପାର ।" ନିଜ ସ୍ଥାନକୁ ଯିବାର ଆଦେଶ ପାଇଲି । ମନେ କଲି ଗୋଟାଏ ଭୟଙ୍କର ବିପଦରୁ ତ୍ରାହି ମିଳିଲା ।"

ଅନ୍ୟ ଏକ ପ୍ରସଙ୍ଗରେ ସେ ଗୁରୁଦେବଙ୍କ ବିଷୟରେ ଲେଖିଛନ୍ତି, "ଚନ୍ଦ୍ରମୋହନଙ୍କର ପୁରୀରୁ ବିଦାୟ ଆକସ୍ମିକ ଥିଲା । ଏପରିକି ସେ ସ୍କୁଲର ଦାୟିତ୍ୱ ହସ୍ତାନ୍ତର କରିବା ପରେ ଆମେ ସେ କଥା ଶୁଣିଲୁ । ସେ ଦିନ ରାତିରେ ଆମେ ହଷ୍ଟେଲ ଛାତ୍ରମାନେ ଗୋଟିଏ ବିଦାୟ ସଭା କଲୁ । କୁଣ୍ଠିତ ଭାବରେ ସେ ସଭାରେ ଯୋଗ ଦେବାକୁ ସ୍ୱୀକୃତ ହେଲେ । ହଷ୍ଟେଲ ସାମନାରେ ଥିବା ଖୋଲା ବାଲି ପଡ଼ିଆରେ ସଭା ହେଲା । କେତେଜଣ ଛାତ୍ର ତାଙ୍କର ଗୁଣ କୀର୍ତ୍ତନ କଲେ । ପରିଶେଷରେ କିଛି ଉପଦେଶ ଦେବା ପାଇଁ ତାଙ୍କୁ ଅନୁରୋଧ କରାଗଲା । ସେ ଏତିକି ମାତ୍ର କହିଲେ "ମୁଁ ଆଶା କରୁଛି, ତୁମ୍ଭମାନଙ୍କର ଚରିତ୍ର ଏପରି ହେବ, ଯେପରି ତୁମ୍ଭର ଶତ୍ରୁ ସୁଦ୍ଧା ସେଥିରେ ଦୋଷ ଖୋଜି ନପାଉ" ବୋଧହୁଏ, ଅନ୍ୟ କେହି ଏତେ ସଂକ୍ଷିପ୍ତ ଓ ଏତେ ସାର ଗର୍ଭକ ବିଦାୟ ଭାଷଣ ଦେଇ ନଥିବେ ।

ଶ୍ରୀଧର ବାବୁଙ୍କ ଆଗ୍ରହ, ବ୍ୟବହାର ଓ ଜ୍ଞାନାର୍ଜନରେ ପ୍ରୀତ ହୋଇ ଚନ୍ଦ୍ରମୋହନ ତାଙ୍କୁ ଖୁବ୍ ସ୍ନେହ କରୁଥିଲେ । ସେ ଥିଲେ ପ୍ରକୃତରେ ଗୁରୁଭକ୍ତ ଛାତ୍ର । ଚନ୍ଦ୍ରମୋହନ ବାଲେଶ୍ୱର ଜିଲ୍ଲାସ୍କୁଲରେ ପ୍ରଧାନ ଶିକ୍ଷକ ଥିବା ବେଳେ ଥରେ ପୁରୀ Sanskrit convocation କୁ ଯୋଗ ଦେବାକୁ ଆସି ଜଗନ୍ନାଥ ସଂସ୍କୃତ କଲେଜ ହତା ମଧ୍ୟରେ ଥିବା ସ୍କୁଲଘରେ ରହିଥିଲେ । ଶ୍ରୀଧର ବାବୁ ଲେଖୁଛନ୍ତି, "ଚନ୍ଦ୍ରମୋହନ ବାବୁ ମୋତେ ହଷ୍ଟେଲରୁ ଡକାଇ ଆଣି ଦିନଟି ଯାକ ତାଙ୍କ ପାଖରେ ରଖାଇ ଥିଲେ । ସେହିଠାରେ ମୋର ଖାଇବା ବ୍ୟବସ୍ଥା କରିଥିଲେ । ହରେକୃଷ୍ଣବାବୁ ଓ ମୁଁ ତାଙ୍କ ସଙ୍ଗେ ଜଗନ୍ନାଥଙ୍କ ମନ୍ଦିରକୁ ଯାଇ ଦେବ ଦେବୀ ଦର୍ଶନ କରିଥିଲୁ ।" ଏହି ଗୁରୁଦେବଙ୍କ ବିଷୟରେ ସ୍ୱୀୟ ଆତ୍ମ ଜୀବନୀ 'ସ୍ରୁଅମୁହଁର ପତର' ପୁସ୍ତକରେ ଲେଖୁଛନ୍ତି, " ସେ ଯେ କେଉଁ ବିଷୟରେ ପ୍ରବୀଣ ନଥିଲେ କହି ହେବ ନାହିଁ, ତାଙ୍କର ପ୍ରକୃତି ଥିଲା 'ବଜ୍ରାଦପି କଠୋରାଣି ମୃଦୁନି କୁସୁମା ଦପି' । ତାଙ୍କୁ ବେଶିଦିନ ହେଡ୍ ମାଷ୍ଟର ରୂପେ ପାଇବା ଆମ ଭାଗ୍ୟରେ ଘଟି ନଥିଲା ।"

ଶ୍ରୀଧର ବାବୁଙ୍କ ଜୀବନ ଥିଲା ସଂଗ୍ରାମଶୀଳ ଜୀବନ । ଜୀବନରେ ବହୁ ଘାତ ପ୍ରତିଘାତର ସମ୍ମୁଖୀନ ହୋଇ ସେ ନିଜକୁ ଗଢ଼ିବାର ସ୍ୱପ୍ନ ଦେଖୁଛନ୍ତି । ଦୁଃଖରେ ସେ ବ୍ୟଥିତ ହୋଇ ନାହାଁନ୍ତି କି ସୁଖରେବି ଆତ୍ମ ବିଭୋର ହୋଇ ନାହାଁନ୍ତି । ବରଂ ଜୀବନ ସଂଗ୍ରାମକୁ କର୍ମ ମୁଖର କରିବା ଦିଗରେ ଜଣେ ଏକନିଷ୍ଠ ସାଧକର ପରିଚୟ ଦେଇଛନ୍ତି । ଯେ କୌଣସି ପରିସ୍ଥିତିରେ, ଯେ କୌଣସି ଅବସ୍ଥାରେ ନିଜ ଜୀବନ ନୌକାକୁ ସମୟର ପ୍ରତିକୂଳ ସ୍ରୋତରେ ବାହିବାର ଅପାର ଆନନ୍ଦାନୁଭୂତି ମଧ୍ୟରେ ସାମିଲ ହୋଇଛନ୍ତି । ଏଥିପାଇଁ ନଥିଲା ତାଙ୍କର କେତେବେଳେ ପ୍ରତିବାଦ କି ପ୍ରତିରୋଧ । ଈଶ୍ୱର ବାଦୀ ଜୀବନରେ ସବୁ କିଛି ଈଶ୍ୱରଙ୍କ ଆଶୀର୍ବାଦ ସଦୃଶ ସେ ଗ୍ରହଣ କରି ନେଇଥିଲେ । ବାସ୍ତବିକ୍ ଜୀବନ ସ୍ରୋତରେ ପତର ଭଳି ଥିଲେ ମଧ୍ୟ ପଥର ସଦୃଶ ସମସ୍ତ ପ୍ରତିକୂଳତାକୁ ମୁଣ୍ଡପାତି ଗ୍ରହଣ କରି ନେଇଥିଲେ, ନିଜ ଅନୁଭୂତି ପୂର୍ଣ୍ଣ ଜୀବନ ବିଷୟରେ କହିବାକୁ ଯାଇ ସ୍ୱରଚିତ ଆତ୍ମ ଜୀବନୀରେ ସେ ଲେଖୁଛନ୍ତି, "ମୋ ଜୀବନକୁ ସ୍ରୁଅ ମୁହଁରେ ଭସି ଯାଉଥିବା ପତ୍ରଭଳି ମନେକରି ଆସିଅଛି । ଲକ୍ଷହୀନ

ଭବରେ କେତେବେଳେ କେଉଁ ଆଡ଼େ ଭସି ଯାଉଛି ତାହାର ସ୍ଥିରତା ନାହିଁ । × × × ଦିନରେ ସୂର୍ଯ୍ୟ ରାତ୍ରିରେ ଚନ୍ଦ୍ର ଦେଖା ଯାଉଥିବା କୁଡ଼ିଆ ଘରେ ଧୂଳି ଶଯ୍ୟାରେ ଶୋଇବାଠାରୁ ଆରମ୍ଭ କରି ଇଷ୍ଟକ ନିର୍ମିତ ପକ୍‌କା ଘରେ ରହିଅଛି । ଶୂନ୍ୟ ଦେହରେ ପ୍ରବଳ ଶୀତ ସହିବାଠାରୁ ଆରମ୍ଭ କରି ଶତ ଶତ ଟଙ୍କା ମୂଲ୍ୟର ଶାଲ ବ୍ୟବହାର କରିଅଛି । ପାଦ ଯାନରେ ଶତ ଶତ ମାଇଲ ଚାଲିବାଠାରୁ ଆରମ୍ଭ କରି ଘୋଡ଼ା ହାତୀ ପ୍ରଭୃତି ବାହନ ସାଇକେଲ, ମୋଟର, ବସ, ଏରୋପ୍ଲେନ୍ ପ୍ରଭୃତି ଯାନ ବ୍ୟବହାର କରିଛି । ପୁନଶ୍ଚ ନିଜ ଜୀବନ ବିଷୟରେ 'ଶେଷଆଶା' ପ୍ରସଙ୍ଗରେ କହିଛନ୍ତି, ସମୟ ସ୍ରୋତରେ ମୋର ଜୀବନ ପତ୍ର ଅନେକଦୂର ଭସି ଆସିଲାଣି । ପଥ ମଧ୍ୟରେ ଶତ ଶତ ପତ୍ର ସହିତ ମିଳିଛି, ପୁଣି ସେ ମାନଙ୍କ ଠାରୁ ଅଲଗା ହୋଇଯାଇଛି । କେତେ ପତ୍ର ତଳକୁ ବୁଡ଼ି ଗଲାଣି । ଦିନେ ଏହି ପତ୍ରଟି ମଧ୍ୟ ଟୁବ୍ କରି ତଳକୁ ଦବି ଯିବ, ତାହାର ଅସ୍ତିତ୍ୱ ରହିବ ନାହିଁ । ସେତେବେଳେ କ'ଣ ହେବ ତାହା କଳ୍ପନା କରି ହେଉ ନାହିଁ । ତଥାପି ସେ ସମୟ ଅତି ନିକଟ ବୋଲି ଭାବୁଅଛି । ”

ଶ୍ରୀଧର ବାବୁଙ୍କ କର୍ମ ଓ ସାଧନା ପୂର୍ଣ୍ଣ ଜୀବନ, ତାଙ୍କର ବ୍ୟକ୍ତି ସମ୍ପର୍କ, ବନ୍ଧୁ ବିଚ୍ଛେଦ, ନିଜେ ସେହି ଅଦୃଶ୍ୟ ପଥର ଯାତ୍ରୀ ହୋଇ ବେଶ୍ ସୁଦୀର୍ଘ ଅନୁଭୂତି, ଅଭିଜ୍ଞତା ଯାହା ସ୍ରୋତୋନ୍ମୁଖୀ ନବୀନପତ୍ର ପାଇଁ ଖୁବ୍ ଉପାଦେୟ, ଖୁବ୍ ଶିକ୍ଷଣୀୟ ଏବଂ ସଂଗ୍ରାମଶୀଳ ହେବାରେ କଠୋର ପ୍ରବୃତ୍ତିକୁ ସୁଦୃଢ଼ କରିଥାଏ ।

ସାହିତ୍ୟ ରଚନା କ୍ଷେତ୍ରରେ ଶ୍ରୀଧରବାବୁଙ୍କ ପ୍ରତିଭା ଥିଲା ବହୁମୁଖୀ । ପ୍ରାୟ ଶତାଧିକ (ଶହେ କୋଡ଼ିଏରୁ ଅଧିକ) ପୁସ୍ତକର ସେ ରଚୟିତା, ଜଣେ ଅଭିଧାନ ସଂକଳକ, ବୟାକରଣ, ବିବିଧ ପାଠ୍ୟ ପୁସ୍ତକ ରଚୟିତା ଓ ଅନୁବାଦକ ଭାବରେ ସେ ଓଡ଼ିଶାରେ ପରିଚିତ । ଏହାଛଡ଼ା ଉଷାଭିଳାଷ ରୁକ୍ମିଣୀ ବିଭା, ମଥୁରା ମଙ୍ଗଳ, ରସକଲ୍ଲୋଳ, ବିଦଗ୍ଧ ଚିନ୍ତାମଣି, ଚିଲିକା, ଦରବାର, ଚନ୍ଦ୍ରଭାଗା ପ୍ରଭୃତି ମଧ୍ୟ ଯୁଗୀୟ ତଥା ଆଧୁନିକ ଯୁଗର କାବ୍ୟ ଗୁଡ଼ିକୁ ଟୀକା ଓ ମୁଖବନ୍ଧ ସହିତ ସମ୍ପାଦନା କରି ନିଜ ସୃଷ୍ଟି ପ୍ରତିଭାର ପରିଚୟ ସେ ଦେଇଛନ୍ତି । ଜଣେ ସଫଳ ଜୀବନୀ ଲେଖକ ଭାବରେ ମଧ୍ୟ

ତାଙ୍କର ସୁନାମ ରହିଛି । ଗଙ୍ଗାଧର ମେହେର, ନନ୍ଦକିଶୋର ବଳ, କବିସୂର୍ଯ୍ୟ ବଳଦେବ, ସାଧୁ ଚରଣ ଦାସ ପ୍ରଭୃତି କବିମାନଙ୍କ ଜୀବନୀ ରଚନା କରିଛନ୍ତି ।

ବିଶେଷ କରି ନବ ଅବିଧାନ ( ଓଡ଼ିଆ–ଓଡ଼ିଆ–ଇଂରାଜୀ ) Student's English Oriya Dictionary ସର୍ବସାର ବ୍ୟାକରଣ, ସଂସ୍କୃତ ବ୍ୟାକରଣ ଓ ରଚନା, ସଂସ୍କୃତ ବ୍ୟାକରଣ ପ୍ରବେଶ, କଥା କୁସୁମ ( ୧ମ, ୨ୟଭାଗ, ) ଯକ୍ଷ ପ୍ରଦୀପ, ଅଳଙ୍କାର–ମଞ୍ଜରୀ, ଅଳଙ୍କାର–ପ୍ରବେଶ ତଥା ବିବିଧ ପ୍ରାଚ୍ୟ ପାଶ୍ଚାତ୍ୟ ସାହିତ୍ୟରୁ ଅନୁବାଦ କାହାଣୀ ପାଇଁ ସେ ଓଡ଼ିଆ ପାଠକ ମାନଙ୍କ ପାଖରେ ଚିର ପରିଚିତ । ପ୍ରାପ୍ତ ବୟସଙ୍କ ଠାରୁ ସାରା ଓଡ଼ିଶାର ଛାତ୍ର ସମାଜ ବା କିଶୋର ପାଠକ ତାଙ୍କର ସବୁଠାରୁ ଅଧିକ । ଫଳରେ ଉପରୋକ୍ତ ପୁସ୍ତକ ଗୁଡ଼ିକ ଲୋକପ୍ରିୟତା ଦୃଷ୍ଟିରୁ ଏକାଧିକ ମୁଦ୍ରଣ ହୋଇ ପାରିଛି ।

ତାଙ୍କର ବହୁଳ ପ୍ରସାରିତ 'ନବଅଭିଧାନ' ଓଡ଼ିଆ ଶବ୍ଦ ଭଣ୍ଡାର ତଥା ଭାଷା ସାହିତ୍ୟ ଆଲୋଚନାର ଏକ ଅମୂଲ୍ୟ ସାରସ୍ୱତ ସମ୍ପଦ । ଓଡ଼ିଆ ଭାଷା ସାହିତ୍ୟର ଛାତ୍ର ଛାତ୍ରୀ, ଶିକ୍ଷକ, ଅଧ୍ୟାପକ, ତଥା ଓଡ଼ିଆ ଭାଷା ସାହିତ୍ୟ ଅନୁରାଗୀ ମାନଙ୍କ ପାଇଁ ଏହା ଏକ ଅଭିନବ ସହାୟକ ଗ୍ରନ୍ଥ । ଏହି ପୁସ୍ତକର ପ୍ରଥମ ସଂସ୍କରଣରେ ଲେଖକ 'ସୂଚନା ଦେଇ ଲେଖିଛନ୍ତି, ଏଥିରେ ପ୍ରାୟ ୨୦୦୦୦ ପ୍ରଚଳିତ ଶବ୍ଦର ପଦ ପ୍ରକରଣ ବିଭିନ୍ନ ସରଳାର୍ଥ, ସମାନାର୍ଥକ ଇଂରାଜୀ ପଦ ବା ତାହାର ତାତ୍ପର୍ଯ୍ୟ ବୋଧକ ସଂକ୍ଷିପ୍ତ ବିଶ୍ଳେଷଣ ଦିଆଯିବା ସଙ୍ଗେ ସଙ୍ଗେ ସ୍ଥଳ ବିଶେଷରେ ମୂଳ ଶବ୍ଦର ପ୍ରକୃତି ପ୍ରତ୍ୟୟ, ବିପରୀତାର୍ଥବୋଧକ ପଦ, ବିପରୀତ ଲିଙ୍ଗ ବା ଅନ୍ୟ ପଦରେ ରୂପାନ୍ତର ପ୍ରଦତ୍ତ ହୋଇଛି । ସୁତରାଂ ଏ ଅଭିଧାନ ଖଣ୍ଡିକ ଓଡ଼ିଆ ଛାତ୍ର ଛାତ୍ରୀ ମାନଙ୍କୁ ଭାଷା ଓ ସାହିତ୍ୟ ସାଧନା ପଥରେ ଯଥୋପଯୁକ୍ତ ସହାୟକ ହେବ ଏବଂ ଓଡ଼ିଆରୁ ଇଂରାଜୀ ଅନୁବାଦ କାର୍ଯ୍ୟରେ ମଧ୍ୟ ସାହାଯ୍ୟ କରି ପାରିବ ବୋଲି ଆଶା କରୁ । ଓଡ଼ିଆ ଶିକ୍ଷାର୍ଥୀ ବୈଦେଶିକ ମାନେ ମଧ୍ୟ ଖଣ୍ଡିଏ ଉପଯୁକ୍ତ ଅଭିଧାନ ଆବଶ୍ୟକ କରିଥାନ୍ତି । ପ୍ରଦତ୍ତ ଇଂରାଜୀ ଅର୍ଥ ଗୁଡ଼ିକ ସେମାନଙ୍କର ଆବଶ୍ୟକତା ପୂରଣ କରି ପାରିବ । ଉକ୍ତ ଅଭିଧାନ ସଂକଳନ ଅବସରରେ ସେ ଏକାଧିକ ଇଂରାଜୀ ଓ ଓଡ଼ିଆ ଅଭିଧାନ,

ଭାଷାକୋଷ, ଶବ୍ଦ କୋଷର ସାହାଯ୍ୟ ନେଇଥିଲେ । ଏହି ଅଭିଧାନ ଖଣ୍ଡିକର ଉପାଦେୟତା ଦୃଷ୍ଟିରୁ ଏହା ଅଧିକ ୫୦୦୦୦ ଶବ୍ଦାର୍ଥ ଓ ଅର୍ଥାନ୍ତର ସହିତ ୧୯୬୭ ମସିହାରେ ପରିମାର୍ଜିତ ଦ୍ୱିତୀୟ ସଂସ୍କରଣ ହୋଇ ପାରିଲା ।

ଓଡ଼ିଆ ଅନୁବାଦ ସାହିତ୍ୟକୁ ଶଶୀଧରବୁବାଙ୍କର ଦାନ ଅତୁଳନୀୟ । ଜଣେ ସଫଳ ଅନୁବାଦକ ଭାବରେ ସେ ସୁପରିଚିତ, ଓଡ଼ିଆ ତଥା ଭାରତୀୟ ସଂସ୍କୃତ ସାହିତ୍ୟର ବିବିଧ କାହାଣୀ ସହିତ ବିଶିଷ୍ଟ ଲେଖକ ମାନଙ୍କର ରଚନାକୁ ଓଡ଼ିଆରେ ଅନୁବାଦ କରିବାରେ ସେ ସିଦ୍ଧହସ୍ତ ଥିଲେ । ଏଥିରୁ ତାଙ୍କର ଇଂରାଜୀ, ସଂସ୍କୃତ, ହିନ୍ଦୀ ଭାଷାରେ ଦକ୍ଷତା ଥିବାର ପ୍ରମାଣ ମିଳେ ।

ପିଲମାନଙ୍କ ପାଇଁ .ଇଂରାଜୀ ସାହିତ୍ୟ ଉପାଦେୟ ଓ ଶିକ୍ଷଣୀୟ, ଏକଥା ଅନୁଭବ କରି ସେ ପ୍ରଥମେ gulliver's Travels ଓ oliver Twist ପୁସ୍ତକ ଦୁଇଟି ଅନୁବାଦ କରିଥିଲେ । ଏହା ପାଠ୍ୟ ପୁସ୍ତକ ରୂପେ ମଞ୍ଜୁରି ପାଇବା ଫଳରେ ବେଶ୍ କିଛି ଅର୍ଥ ପାଇଲେ । ଅନ୍ୟାନ୍ୟ ବହୁ ଇଂରାଜୀ ପୁସ୍ତକର ସଂକ୍ଷିପ୍ତ ଅନୁବାଦ କରିବା ଦ୍ୱାରା ସେସବୁ ଖୁବ୍ ଆଦୃତ ହୋଇ ପାରିଥିଲା । ଏହା ଛଡ଼ା ନିଜ ଆତ୍ମଜୀବନୀରେ ଲେଖିଛନ୍ତି "ଗ୍ରନ୍ଥମନ୍ଦିର କେତକ ବିଶିଷ୍ଟ ଲୋକପ୍ରିୟ ଇଂରାଜୀ ଓ ସଂସ୍କୃତ ବହିର ଓଡ଼ିଆ ଅନୁବାଦ କରିବାର ଭାର ମୋ ଉପରେ ନ୍ୟସ୍ତ କରିଥିଲେ ଓ ସେଥି ନିମନ୍ତେ ପୃଷ୍ଠା ପ୍ରତି କିଛି ପାରିଶ୍ରମିକ ଦେବାର ହୋଇଥିଲା । ପାରିଶ୍ରମିକର ପରିମାଣ ନଗଣ୍ୟ ହେଲେ ସୁଦ୍ଧା ଏହା ଫଳରେ ମୁଁ ଅନେକ ଗୁଡ଼ିଏ ବହି ଲେଖିପାରିଥିଛି । ସେ ଗୁଡ଼ିକ ଇଂରାଜୀ ସଂସ୍କୃତରୁ ଅନୂଦିତ । "ଏହି ସବୁ ପୁସ୍ତକ ଗୁଡ଼ିକ ହେଉଛି ସେକସ୍‌ପିଅର କାହାଣୀ (୧ମ, ୨ୟ, ୩ୟ ଖଣ୍ଡ), ଟଲଷ୍ଟୟ କାହାଣୀ (୧ମ, ୨ୟ, ୩ୟ ଖଣ୍ଡ), ମୋପାସାଁ କାହାଣୀ (୧ମ, ୨ୟ, ୩ୟ, ୪ର୍ଥ ), ଈଶପ୍ କାହାଣୀ, ଗ୍ରୀସ୍ ଦେଶର ଉପକଥା, ଚେକଭ କାହାଣୀ, ଟମ କକାଙ୍କ କେବିନ, ହୋମର କାହାଣୀ (ଟ୍ରୟ ଯୁଦ୍ଧ ଓ ଓଡ଼ିସିଅସ୍‌ଙ୍କ ସ୍ୱଦେଶ ପ୍ରତ୍ୟାବର୍ତ୍ତନ), ଗର୍କୀ କାହାଣୀ, ରବିନ୍ ହୁଡ୍, ରଷିଆ ଦେଶର ଲୋକ କାହାଣୀ, ରତ୍ନଦୀପ, ଡେଭିଡ଼ କପର ଫିଲଡ଼,

ଆଇଭନ୍ ହୋ ଇତ୍ୟାଦି । ଏହା ବ୍ୟତୀତ ଆମେରିକାର Information Service ଆନୁକୂଲ୍ୟରେ ପୃଥିବୀ ପାଇଁ ଜଳ, ଶାନ୍ତି ପଥର ବୀର ସୈନିକ, ଜର୍ଜ ଓ ଏଷ୍ଟିଙ୍ଗ୍ ହାଉସ୍ ମାର୍କିନ୍ ଗଣ୍ଡରେ ଏକ ସଂଖ୍ୟା ଲଘୁ ସଂପ୍ରଦାୟ, ଭିଏତ୍‌ନାମ ଯୁଦ୍ଧ କାହିଁକି ?, ଭିଏତ୍ କିଙ୍ଗ୍ ପ୍ରଭୃତି ତାଙ୍କର କେତୋଟି ପୁସ୍ତକ ମଧ୍ୟ ପ୍ରକାଶ ପାଇଥିଲା । ଏଥିପାଇଁ ସେ ପାରିଶ୍ରମିକ ସ୍ୱରୂପ ସାତ ଆଠ ହଜାର ଟଙ୍କା ମଧ୍ୟ ପାଇଥିଲେ ।

ଶ୍ରୀଧରବାବୁ ପାଶ୍ଚାତ୍ୟ ସାହିତ୍ୟର କାହାଣୀ ଗୁଡ଼ିକୁ ଅନୁବାଦ କରିବା ସହିତ ପ୍ରାଚ୍ୟ ଭାରତୀୟ ସଂସ୍କୃତ, ପୁରାଣ ସାହିତ୍ୟ–ରାମାୟଣ, ମହାଭାରତ, ବୌଦ୍ଧ ଜାତକ ପ୍ରଭୃତିରେ ଥିବା ନୀତିଶିକ୍ଷା, ଚରିତ୍ର ଗଠନ, କର୍ତ୍ତବ୍ୟ ପାଳନ, ସତ୍ କର୍ମ, ସତ୍ ବାକ୍ୟ ଓ ଧର୍ମ ଶିକ୍ଷା ମୂଳକ କାହାଣୀ ଗୁଡ଼ିକ ଅନୁବାଦ କରିଥିଲେ । ଏହିସବୁ କାହାଣୀ ମଧ୍ୟରୁ ସଂସ୍କୃତ ସାହିତ୍ୟରୁ ବେତାଳ ପଞ୍ଚବିଂଶତି, ଶକୁନ୍ତଳା, ମୃଚ୍ଛକଟିକ ଓ ମୁଦ୍ରାରାକ୍ଷସ, ପଞ୍ଚତନ୍ତ୍ରରୁ ( ମିତ୍ରଲାଭ ୧ମ, ୨ୟାର୍ଦ୍ଧ ), ମିତ୍ରଭେଦ ( ୧ମ, ୨ୟାର୍ଦ୍ଧ ), ମିତ୍ର ପ୍ରାପ୍ତ ( ୨ୟ ଖଣ୍ଡ ), କାକୋଲୁକୀୟ ( ୩ୟ ଖଣ୍ଡ ) , ଲବ୍‌ଧ ପ୍ରଣାସ ( ୪ର୍ଥ ଖଣ୍ଡ ), ଅପରୀକ୍ଷିତ କାରକ ( ୫ମ ଖଣ୍ଡ ), ମାଳବିକା ଅଗ୍ନି ମିତ୍ର ଓ ଉର୍ବଶୀ, ହିତୋପଦେଶ ( ୧ମ, ୨ୟ, ୩ୟ ଖଣ୍ଡ), ପୁରାଣ ସାହିତ୍ୟରୁ ରାମାୟଣ କାହାଣୀ, ମହାଭାରତ କାହାଣୀ ବୌଦ୍ଧ ଜାତକରୁ ଜାତକ କାହାଣୀ ( ୧ମ, ୨ୟ, ୩ୟ, ୪ର୍ଥ ଖଣ୍ଡ ) ଇତ୍ୟାଦି ଏହି ଅନୁଦିତ ଗ୍ରନ୍ଥ ଗୁଡ଼ିକ ପ୍ରକାଶକ ମାନେ ଖୁବ୍ ଆଗ୍ରହର ସହିତ ପ୍ରକାଶକରି ବେଶ୍ ଲାଭବାନ ହେଉଥିଲେ । କାରଣ ପୁସ୍ତକର ଉପାଦେୟତା ତଥା ସ୍ୱଳ୍ପ ମୂଲ୍ୟ ଦୃଷ୍ଟିରୁ ଓଡ଼ିଶାର ସମସ୍ତ ମାଇନର ଓ ହାଇସ୍କୁଲ, ଗ୍ରାମ୍ୟପାଠାଗାର, ସାଧାରଣ ପୁରସାର ତଥା ବ୍ୟକ୍ତି ବିଶେଷଙ୍କ ପରିବାର ପାଇଁ କିଣିବା ଖୁବ୍ ସହଜ ଓ ସମ୍ଭବ ହୋଇ ପାରୁଥିଲା । ଶ୍ରୀଧର ବାବୁ ସ୍ୱୀୟ ଆତ୍ମଜୀବନୀରେ ଲେଖିଛନ୍ତି, "ଏପରି କି ବର୍ତ୍ତମାନ 'ଗ୍ରନ୍ଥମନ୍ଦିର' ବିଶ୍ୱ ସାହିତ୍ୟ ନାମରେ ଏହି ପ୍ରକାର ଅନୁବାଦ ଗ୍ରନ୍ଥମାଳା ପ୍ରକାଶ କରୁଅଛନ୍ତି । ସେହିପରି ସଂସ୍କୃତ ସାହିତ୍ୟର 'ହିତୋପଦେଶ' ଓ 'ପଞ୍ଚତନ୍ତ୍ର' ପ୍ରଭୃତି କେତେକ ଗ୍ରନ୍ଥର ଅନୁବାଦ କରିଅଛି ।"

ଶିଶୁର ସର୍ବଦା ଜିଜ୍ଞାସୁ ମନକୁ ଘେନିଲା ଭଳି ବିଷୟ ନିର୍ବାଚନ, ତାର ସରଳ ନିଷ୍ପାପ ଶିଶୁ ପ୍ରାଣକୁ ଛୁଇଁଲା ଭଳି କଥନଭଙ୍ଗୀ ଶିଶୁ ମୁଖର ଭାଷା,

ତାର ଆଗ୍ରହ ବ୍ୟବହାର, ଆଦର୍ଶ ଚରିତ୍ର ଗଠନ ମୂଳକ ନୀତିଶିକ୍ଷା, ଯାହା ଶିଶୁର ମାନସିକ ଓ ବୌଦ୍ଧିକ ବିକାଶକୁ ପୂର୍ଣ୍ଣାଙ୍ଗ ପରିପକ୍ୱ କରିବା ସହିତ ଏକ ସୁସ୍ଥ କର୍ତ୍ତବ୍ୟବାନ୍, ନୀତିବାନ୍, ଚରିତ୍ରବାନ୍ ନାଗରିକ ହେବାର ଅନୁକୂଳତା ପ୍ରଦାନ କରିଥାଏ । ଫଳରେ ଏଥିରେ ଶିଶୁର କଲ୍ୟାଣ ସାଧିତ ହେବା ସଙ୍ଗେ ସଙ୍ଗେ ସମାଜ, ଦେଶ ଓ ଜାତିର ଅଶେଷ ହିତ ସାଧନ ହୋଇଥାଏ । ଉପରୋକ୍ତ ପାଶ୍ଚାତ୍ୟ ଓ ପ୍ରାଚ୍ୟ ସାହିତ୍ୟର କାହାଣୀ ଗୁଡ଼ିକରେ ଶିଶୁ ଗଠନ ଉପଯୋଗୀ ଉପାଦାନ ଭରପୂର । ପ୍ରାଚ୍ୟ ସାହିତ୍ୟର ପଶୁ ପକ୍ଷୀ, ଆଦର୍ଶ ଚରିତ୍ର ଧର୍ମୀ କାହାଣୀରୁ ପାଶ୍ଚାତ୍ୟ ଆଗ୍ରହ, ବ୍ୟବହାର, ରୀତି ନୀତି ସର୍ବସ୍ୱ କାହାଣୀ ଗୁଡ଼ିକ ପ୍ରତ୍ୟେକଟି ଶିଶୁର ବିକାଶ ଓ ଗଠନ ଉପଯୋଗୀ ।

ଶ୍ରୀଧର ବାବୁ ଓଡ଼ିଆ ଶିଶୁ ସାହିତ୍ୟର ପ୍ରକୃତ ଅଭାବ ଅନୁଭବ କରିବା ସହିତ ଶିଶୁର ଉପଯୁକ୍ତ ବିକାଶକୁ ଲକ୍ଷ୍ୟରଖି ଶିଶୁପାଠ୍ୟ ଅନୁବାଦ କ୍ଷେତ୍ରରେ ବ୍ରତୀ ହୋଇଥିଲେ । ସେ ମର୍ମେ ମର୍ମେ ଅନୁଭବ କରିଥିଲେ ଯେ ଶିଶୁ ପାଇଁ ଭାରତୀୟ ସଂସ୍କୃତ, ବୌଦ୍ଧ ଜାତକ, ରାମାୟଣ, ମହାଭାରତ ଓ ଇଉଲ କାହାଣୀ ଗୁଡ଼ିକ ଯେତିକି ଉପାଦେୟ ପାଶ୍ଚାତ୍ୟର ବିବିଧ କାହାଣୀ ଗୁଡ଼ିକ ତଦନୁରୂପ ଶିକ୍ଷଣୀୟ, ପାଶ୍ଚାତ୍ୟ ସାହିତ୍ୟର ରୀତି ନୀତି, ଆଗ୍ରହ, ବ୍ୟବହାର ଓ ଶିକ୍ଷା ବିଷୟରେ ଶିଶୁ ଅନେକ କିଛି ଜାଣିପାରେ । ଅନୁବାଦ କ୍ଷେତ୍ରରେ ଶ୍ରୀଧର ବାବୁଙ୍କ ସ୍ୱକୀୟ ମୌଳିକତାର ପରିଚୟ ମିଳେ । ଏହି ଅନୁବାଦ ଗୁଡ଼ିକ ପ୍ରାଚ୍ୟ ପାଶ୍ଚାତ୍ୟ କଥାବସ୍ତୁର ଆକ୍ଷରିକ ଅନୁବାଦ ନୁହେଁ ବରଂ ମର୍ମାନୁବାଦ ବା ଭାବାନୁବାଦ ।

ଏହା ନିଶ୍ଚିତ ଯେ ଏହିସବୁ ପ୍ରାଚ୍ୟ, ପାଶ୍ଚାତ୍ୟ କାହାଣୀକୁ ଓଡ଼ିଆରେ ଅନୁବାଦ କରିବା ଦିଗରେ ତାଙ୍କର ଗୁରୁଦେବ ଚନ୍ଦ୍ରମୋହନଙ୍କ ପ୍ରଭାବ ଥିଲା ଯଥେଷ୍ଟ, କାରଣ ସ୍ୱର୍ଗତ ଚନ୍ଦ୍ରମୋହନ ମହାରଣାଙ୍କ 'କଥାବଳି' (୧ମ ,୨ୟ ଭାଗ) ପୁସ୍ତକରେ ଅନେକ ଗଳ୍ପ ସଂସ୍କୃତ ପଞ୍ଚତନ୍ତ୍ର, ମିତ୍ରଲାଭ, ଈଶପ୍ କାହାଣୀ, ଭାରତୀୟ ଓ ପାଶ୍ଚାତ୍ୟ ଇତିହାସରୁ କଥାବସ୍ତୁ ଗ୍ରହଣ କରିଥିଲେ । ଶିଶୁ ଶିକ୍ଷାର ମାନଦଣ୍ଡକୁ ଗଠନ କଲାଭଳି ଏହି ପୁସ୍ତକ ଦୁଇଖଣ୍ଡ ସେତେବେଳେ ଓଡ଼ିଶାରେ ବହୁଳ ଭାବରେ ପ୍ରସାର ଲାଭ କରିଥିଲା । ଇଂଲଣ୍ଡର ମ୍ୟାକ୍‌ମିଲନ୍ କମ୍ପାନୀ କଥାବଳି (୧ମ/୨ୟଖଣ୍ଡ କୁ ଏକାଧିକ ଭାଷାରେ ଅନୁବାଦ କରି

ସେସବୁ ପ୍ରଦେଶ ମାନଙ୍କର ଶିଶୁପାଠ୍ୟ ରୂପେ ପ୍ରଚଳନ କରି ବହୁ ଲାଭାଂଶ ପାଇଥିଲେ । ଶ୍ରୀଧର ବାବୁ ଚନ୍ଦ୍ରମୋହନଙ୍କ 'କଥାବଳି' ନିଶ୍ଚିତ ପଢିଥିଲେ । ତାଙ୍କ ପାଖରେ ଥିବା 'କଥାବଳି' ପୁସ୍ତକ ନୟାଗଡ଼ ଉଦୟପୁର ଦାଶରଥି ପଟ୍ଟନାୟକଙ୍କୁ ଦେଇ ଥିବା କଥା ମଧ୍ୟ ସ୍ୱୀକାର କରିଛନ୍ତି । ସେହିଭଳି ତାଙ୍କ ବ୍ୟାକରଣ ପୁସ୍ତକ ରଚନା ଦିଗରେ ଚନ୍ଦ୍ରମୋହନଙ୍କ ମୌଳିକ 'ଓଡ଼ିଆ ବ୍ୟାକରଣ' (୧ମ/୨ୟଖଣ୍ଡ) ପୁସ୍ତକ ଦୁଇଟି ବହୁ ପ୍ରେରଣା ଯୋଗାଇ ଥିଲା ।

ଯା ବି ହେଉ; ଶ୍ରୀଧର ବାବୁଙ୍କ କାହାଣୀ ଗୁଡ଼ିକ ଓଡ଼ିଆ ଶିଶୁ - ସାହିତ୍ୟ ଓ କିଶୋର ସାହିତ୍ୟର ଏକ ଅମୂଲ୍ୟ ସମ୍ପଦ । ସବୁଠୁ ବଡ଼ କଥା ଶ୍ରୀଧରବାବୁ ତାଙ୍କ ସମଗ୍ର ଜୀବନର ଅନୁଭୂତି ଓ ଅଭିଜ୍ଞତାର ପରିପକ୍ୱ ଜ୍ଞାନକୁ ଶିଶୁ ସାହିତ୍ୟ ରଚନା କ୍ଷେତ୍ରରେ ନିୟୋଜିତ କରିଥିଲେ । ତାଙ୍କ ରଚିତ ପୁସ୍ତକ ଗୁଡ଼ିକ ଓଡ଼ିଶାର ବର୍ତ୍ତମାନ ତଥା ଉତ୍ତର ଦାୟାଦ ଶିଶୁ ଶିକ୍ଷାର ମାନଦଣ୍ଡକୁ ଗଠନ କରିବା ଦିଗରେ ବିଶେଷ ସହାୟକ ହେବ, ଏଥିରେ ସନ୍ଦେହ ନାହିଁ । ଏହି ପ୍ରସଙ୍ଗରେ ଓଡ଼ିଶାର ସ୍ୱନାମ ଧନ୍ୟ ଜାତୀୟତାବାଦୀ କବି ପଦ୍ମଚରଣ ପଟ୍ଟନାୟକ ଏକ ବ୍ୟକ୍ତିଗତ ପତ୍ରରେ (ପୁରୀ, ତା ୨୪ । ୯ । ୧୯ ୩୧ ମସିହା) ଶ୍ରୀଧର ବାବୁଙ୍କ ପାଖକୁ ଲେଖି ଥିଲେ, "ତୁମ୍ଭର ସ୍ନେହର ଦାନ "ପିଲଙ୍କ ସେକ୍ସପିଅର" ଗ୍ରହଣ କରି ରଚନାବଳୀରେ ତୁମ୍ଭେ ଯେଉଁ ଦକ୍ଷତା ତୁମ୍ଭର ଛାତ୍ରାବସ୍ଥାରେ ଦେଖାଇ ଥିଲ, ଜ୍ଞାନ ଓ ଅଭିଜ୍ଞତା ବୃଦ୍ଧି ସଙ୍ଗେ ସଙ୍ଗେ ତାହାର ପରିଣତି ଦେଖି ମୁଁ କେତେ ଦୂର ଆନନ୍ଦିତ ହୋଇଅଛି, ତାହା ଏ କ୍ଷୁଦ୍ର ପତ୍ରରେ ବା କ'ଣ ଜଣାଇବି ? ବହୁ ଖଣ୍ଡରେ ଏହି 'ପିଲଙ୍କ ସେକ୍ସ ପିଅର' ଗ୍ରନ୍ଥ ଶେଷକରି ପାରିଲେ ତୁମ୍ଭେ ଓଡ଼ିଶାର ବାଳକ–ବାଳିକା ମାନଙ୍କପାଇଁ ଜ୍ଞାନ ଓ ଆନନ୍ଦର ଗୋଟିଏ ଅନନ୍ତ ଉତ୍ସ ଖୋଲି ଦେଇଯିବ । ସେଥି ସଙ୍ଗେ ସଙ୍ଗେ ଉତ୍କଳ ସାହିତ୍ୟ କ୍ଷେତ୍ରରେ ସ୍ଥାୟୀ କୀର୍ତ୍ତି ଅର୍ଜନ କରି ପାରିବ । ଏଥିରେ ଅଣୁ ମାତ୍ର ସନ୍ଦେହ ନାହିଁ । ତୁମ୍ଭର ରଚନାର ଭଙ୍ଗୀ ବାକ୍ୟ ବିନ୍ୟାସର କୌଶଳ ମୋତେ ଯଥେଷ୍ଟ ଆନନ୍ଦ ଦେଇଅଛି । ଏଦିଗରେ ତୁମ୍ଭେ ଅଧ୍ୟବସାୟ ଅକ୍ଷୁଣ୍ଣ ରଖିପାରିଲେ ଉତ୍କଳର ଶିଶୁକୁଳ କାଳେ କାଳେ ତୁମ୍ଭ ନିକଟରେ ଋଣୀ ହୋଇ ରହିବେ । ସିଦ୍ଧିଦାତା ଭଗବାନ ତୁମ୍ଭର

ସହାୟ ହୁଅନ୍ତୁ "ଉପରୋକ୍ତ ଚିଠିରୁ ତାଙ୍କ ସାର୍ଥକ ଅନୁବାଦକ ଜୀବନର ସ୍ପଷ୍ଟ ପରିଚୟ ମିଳେ ।

କେବଳ ଏତିକି ନୁହେଁ, ନିଜର ଏକନିଷ୍ଠ ସାରସ୍ୱତ ସାଧନା ପାଇଁ ଓଡ଼ିଶାର ଓ ବାହାରର ବିଭିନ୍ନ ସାହିତ୍ୟ ତଥା ସାଂସ୍କୃତିକ ଅନୁଷ୍ଠାନ ପକ୍ଷରୁ ତାଙ୍କୁ ସମ୍ମାନର ସହିତ ମାନପତ୍ରାଦି ପ୍ରଦାନ କରାଯାଇଥିଲା । ୧୯୭୨ ମସିହା ଉତ୍କଳ ସାହିତ୍ୟ ସମାଜର ହୀରକ ଜୟନ୍ତୀ ଉତ୍ସବରେ ତାଙ୍କପରି ମହାନ୍ ପ୍ରତିଭାକୁ ସମ୍ମାନ ଜଣାଇ ପ୍ରଶଂସା ପତ୍ର ପ୍ରଦାନ କରାଯାଇଥିଲା । ୧୯୭୪ ମସିହାରେ ଟଲଷ୍ଟୟ କାହାଣୀ (୧ମ/୨ୟ ଭାଗ), ଗର୍କୀ କାହାଣୀ ଓ ଚେକଭ୍ କାହାଣୀ ପାଇଁ 'ସୋଭିଏଟ୍ ଦେଶ ନେହେରୁ ପୁରସ୍କାର' ସ୍ୱରୂପ ମାନପତ୍ର, ବ୍ରୋଞ୍ଜପଦକ ସହିତ ୧୫୦୦ଶହ ଟଙ୍କାର ଆର୍ଥିକ ଅନୁଦାନ ପାଇଥିଲେ । ୧୯୭୮ ମସିହାରେ 'ଓଡ଼ିଶା ସାହିତ୍ୟ ଏକାଡେମି' ତାଙ୍କ ସ୍ରଷ୍ଟି ପ୍ରତିଭାକୁ ଯଥାର୍ଥ ସମ୍ମାନ ଦେବାକୁ ଯାଇ ଏକାଧାରରେ ଜଣେ ବିଶିଷ୍ଟ ପ୍ରାବନ୍ଧିକ, ଅନୁବାଦକ, ଜୀବନୀକାର, ସଂପାଦକ ଏବଂ ସଂକଳକ ଭାବରେ ତାଙ୍କୁ ମାନପତ୍ର ପ୍ରଦାନ କରିଥିଲେ । ୧୯୮୦ ମସିହାରେ ନିଜ ସାହିତ୍ୟିକ ଜୀବନ ଓ ଅଧ୍ୟାପନା ଜୀବନର କର୍ମପୀଠ ଖ୍ରୀଷ୍ଟ ମହାବିଦ୍ୟାଳୟର 'ଓଡ଼ିଆ ସାହିତ୍ୟ ସମାଜ' ପକ୍ଷରୁ ଉଭୟ ଛାତ୍ର ଓ ଶିକ୍ଷକ ତାଙ୍କ କର୍ମ ଯୋଗର ବନ୍ଦନା କରିଥିଲେ ହୃଦୟର ଭକ୍ତିପୂତ ଶ୍ରେଷ୍ଠ ନୈବେଦ୍ୟ ଦେଇ ।

ସେ ଜନ୍ମ ହୋଇଥିଲେ ଏହି ସମାଜରେ । ଯେଉଁ ସମାଜରେ ସେ ବହୁ ପ୍ରତିକୂଳତା ମଧ୍ୟରେ ସ୍ରୋତର ଉଜାଣି ମୁଖରେ ଉଠିବାର ପ୍ରୟାସ କରି ନିରାଶ ହୋଇ ନଥିଲେ । ବଂର ପ୍ରତିକୂଳତା ରୂପକ ପ୍ରତାରଣାକୁ ହୃଦୟର ଗଭୀର ସ୍ନେହ, ମମତା ଓ ବିଶ୍ୱାସ ଦେଇ ଆପଣାର, ନିଜର କରିଥିଲେ । ତାଙ୍କ ନିଜ ଭାଷାରେ "ଏପରି ଜୀବନରେ ମୁଁ ବାରମ୍ବାର ପ୍ରତାରିତ ହୋଇଛି । ତଥାପି ମନୁଷ୍ୟକୁ ବିଶ୍ୱାସ କରିବାର ଅଭ୍ୟାସ ଛାଡ଼ି ପାରିନାହିଁ ।" ହୁଏତ ସାମାଜିକ, ସାଂସାରିକ ବା ଜାଗତିକ ଦୃଷ୍ଟି କୋଣରୁ ସେ ଅନ୍ୟ ଦ୍ୱାରା ପ୍ରତାରିତ ହୋଇଛନ୍ତି କିନ୍ତୁ କର୍ତ୍ତବ୍ୟ, ଜ୍ଞାନ, ଧର୍ମ ଓ ମନୁଷ୍ୟୋଚିତ କର୍ମ ଦୃଷ୍ଟିରୁ ମନୁଷ୍ୟ ଜନ୍ମକୁ ସାର୍ଥକ କରିଛନ୍ତି ଜଣେ ସତ୍ୟନିଷ୍ଠ, କର୍ତ୍ତବ୍ୟ ପରାୟଣ, ଏକନିଷ୍ଠବାଣୀ ସାଧକ ଭାବରେ ।



# ଶ୍ରୀଧର ଦାସଙ୍କ ରଚନାବଳୀ

## ବ୍ୟାକରଣ

୧ । ନବ ଅଭିଧାନ (ଓଡ଼ିଆ-ଓଡ଼ିଆ-ଇଂରାଜୀ)
୨ । Students' English Oriya Dictionary
୩ । ବିବିଧ କୋଷ (ଅନ୍ୟ ଲେଖକଙ୍କ ସହାୟତାରେ)
୪ । ଲଘୁ ବ୍ୟାକରଣ
୫ । ସଂସ୍କୃତ ବ୍ୟାକରଣ ପ୍ରବେଶ (ଅନ୍ୟ ଜଣଙ୍କ ସହାୟତାରେ)
୬ । ମଧ୍ୟ ବ୍ୟାକରଣ ( ,, ,, )
୭ । ସଂସ୍କୃତ ବ୍ୟାକରଣ ଓ ରଚନା ( ,, ,, )
୮ । ସର୍ବସାର ବ୍ୟାକରଣ
୯ । ସରଳ ଓଡ଼ିଆ ବ୍ୟାକରଣ (ଅନ୍ୟ ଜଣଙ୍କ ସହାୟତାରେ)
୧୦ । ମୌଳିକ ଲଘୁ ବ୍ୟାକରଣ ଓ ରଚନା ( ,, ,, )
୧୧ । ମୌଳିକ ମଧ୍ୟ ବ୍ୟାକରଣ ଓ ରଚନା ( ,, ,, )
୧୨ । ସରଳ ସଂସ୍କୃତ ବ୍ୟାକରଣ
୧୩ । ମଧ୍ୟ ଓଡ଼ିଆ ବ୍ୟାକରଣ—୧ମ ଭାଗ
୧୪ । ,, ,, ୨ୟ ଭାଗ

## ଅନ୍ୟାନ୍ୟ ପାଠ୍ୟ ପୁସ୍ତକ

୧୫ । ମନୋହର ପାଠ ୧ମ ଭାଗ (ମଞ୍ଜୁର ହୋଇଛି)
୧୬ । ,, ୨ୟ ଭାଗ (ମଞ୍ଜୁର ହୋଇଛି)
୧୭ । ପାଠପ୍ରଦୀପ—୩ୟ ଭାଗ (ମଞ୍ଜୁର ହୋଇ ନ ଥିଲା)
୧୮ । ପାଠପ୍ରଦୀପ—୪ର୍ଥ ଭାଗ ( ,, ,, )

୯ । କଥାମାଳା (ଅନ୍ୟ ଦୁଇଜଣଙ୍କ ସହାୟତାରେ)

୧୦ । କଥା ସୁମନ–୧ମ ଭାଗ (ମଞ୍ଜୁରୀପ୍ରାପ୍ତ)

୧୧ । କଥାସୁମନ–୨ୟ ଭାଗ (ମଞ୍ଜୁରୀପ୍ରାପ୍ତ)

୧୨ । ଆମ ଦେଶର ଇତିହାସ ଗପ–୧ମ ଭାଗ(ଅନ୍ୟ ଦୁଇଜଣଙ୍କ ସହାୟତାରେ)

୧୩ । ,, ,, –୨ୟ ଭାଗ( ,, ,, )

୧୪ । ମଞ୍ଜୁଷା–୮ମ ଶ୍ରେଣୀ ପାଇଁ (ମଞ୍ଜୁରୀପ୍ରାପ୍ତ)

୧୫ । ଜୀବନୀ-ବର୍ତ୍ତିକା–୮ମ ଶ୍ରେଣୀ ପାଇଁ (ଅନ୍ୟ ଲେଖକଙ୍କ ସହାୟତାରେ)
ମଞ୍ଜୁରୀପ୍ରାପ୍ତ

୧୬ । ପଞ୍ଚପ୍ରଦୀପ (ମଞ୍ଜୁରୀପ୍ରାପ୍ତ)

୧୭ । ଅଳଙ୍କାର-ମଞ୍ଜରୀ (ଅଳଙ୍କାର)

## ପାଠ୍ୟପୁସ୍ତକ ବିଷୟକ

୧୮ । ସାହିତ୍ୟ-ମୁକୁର–୧ମ ଭାଗ

୧୯ । ସାହିତ୍ୟ-ମୁକୁର–୨ୟ ଭାଗ

୨୦ । ପାଠକଳିକା–୧ମ ଭାଗ

୨୧ । ପାଠକଳିକା–୨ୟ ଭାଗ
(ଦୁଇଟିଯାକ ଅନ୍ୟ ଲେଖକଙ୍କ ସହାୟତାରେ)

୨୨ । ପାଠକୁସୁମ (ଅନ୍ୟମାନଙ୍କ ସହାୟତାରେ)

୨୩ । ନୂତନ ସାହିତ୍ୟ ସଂଗ୍ରହ (୮ମ ଶ୍ରେଣୀ ପାଇଁ ମଞ୍ଜୁରୀପ୍ରାପ୍ତ)
(ଅନ୍ୟ ଲେଖକଙ୍କ ସହାୟତାରେ)

୨୪ । Tales of Utkal. (ମଞ୍ଜୁରୀପ୍ରାପ୍ତ ନୁହେଁ)

୨୫ । ନବଇତିହାସ–୧ମ ଭାଗ

୨୬ । ନବଇତିହାସ–୨ୟ ଭାଗ

୨୭ । ନବଭୂଗୋଳ–୧ମ ଭାଗ

୨୮ । ନବଭୂଗୋଳ–୨ୟ ଭାଗ

## ଅନୁବାଦ

୩୯ । ପୃଥିବୀ ପାଇଁ ଜଳ (U. S. A. Information Service ଆନୁକୂଲ୍ୟରେ)

୪୦ । ଶାନ୍ତିପଥର ସୀମାହୀନ -do-

୪୧ । ଜର୍ଜ୍ଜ ଓ ଏଷ୍ଟିଙ୍ଗ୍ ହାଉସ୍ -do-

୪୨ । ମାର୍କିନ୍ ରାଷ୍ଟ୍ରରେ ଏକ ସଂଖ୍ୟାଲଘୁ ସଂପ୍ରଦାୟ -do-

୪୩ । ଉଏନ୍ କାମ ଯୁଦ୍ଧ କାହିଁକ ? -do-

୪୪ । ଉଏନ୍ କଙ୍ଗ୍ -do-

୪୫ । ଶିବାଜୀ ପଲ୍ଲୀର କଳା ଚଉଧାବାଘ

୪୬ । ବୃକ୍ଷଜଗତ (ଏନ୍. ବି. ଟି. ଆନୁକୂଲ୍ୟରେ)

୪୭ । ଆଲିବାବା

୪୮ । ଦ୍ରବ୍ୟ ଚକ୍ଷୁ ( ,, ,, ପ୍ରକାଶନ ଅପେକ୍ଷାରେ)

୪୯ । ଭାରତର ଅର୍ଥନୈତିକ ଇତିହାସ (Indian council of Historical Research ଆନୁକୂଲ୍ୟରେ ପ୍ରକାଶନ ଅପେକ୍ଷାରେ)

୫୦ । ରବିନ୍ ହୁଡ୍

୫୧ । ବିଚିତ୍ର କାହାଣୀ

୫୨ । ଲିଓ ଟଲଷ୍ଟୟଙ୍କ ଗଳ୍ପମାଳା

୫୩ । ଅଲିଭର୍ ଟୁଇଷ୍ଟ୍

୫୪ । ଗଲିଭରର ଭ୍ରମଣ କାହାଣୀ

୫୫ । ମୃଚ୍ଛକଟିକ ଓ ମୁଦ୍ରାରାକ୍ଷସ

୫୬ । ଅଶୀ ଦିନରେ ପୃଥିବୀ ପରିକ୍ରମଣ

୫୭ । ବିଚିତ୍ର ଜୀବଜ

୫୮ । ସେକ୍ସପିଅର କାହାଣୀ–(୧ମ)

୫୯ । ସେକ୍ସପିଅର କାହାଣୀ–(୨ୟ)

୬୦ । ସେକ୍ସପିଅର କାହାଣୀ–(୩ୟ)

୬୧ । ଗ୍ରୀସ୍ ଦେଶର ଉପକଥା

୬୨ । ସମୁଦ୍ର ଗର୍ଭରେ କୋଡ଼ିଏ ହଜାର ଲିଗ୍ ଭ୍ରମଣ
୬୩ । ଟମସୟର
୬୪ । ଟଲଷ୍ଟୟ କାହାଣୀ-(୧ମ)
୬୫ । ଟଲଷ୍ଟୟ କାହାଣୀ-(୨ୟ)
୬୬ । ଟଲଷ୍ଟୟ କାହାଣୀ-(୩ୟ)
୬୭ । ଚେକଭ କାହାଣୀ
୬୮ । ଆଇଭାନ ହୋ
୬୯ । ଚନ୍ଦ୍ରକାନ୍ତ ମଣି
୭୦ । ରତ୍ନ-ଦ୍ୱୀପ
୭୧ । ଡେଭିଡ୍ କପର୍ ଫିଲ୍ଡ୍
୭୨ । ଟମକକାଙ୍କ କେବିନ
୭୩ । ହୋମର୍ କାହାଣୀ
୭୪ । ଗର୍କି କାହାଣୀ
୭୫ । ମୋ ପାସାଁ କାହାଣୀ-(୧ମ)
୭୬ । ମୋ ପାସାଁ କାହାଣୀ-(୨ୟ)
୭୭ । ମୋ ପାସାଁ କାହାଣୀ-(୩ୟ)
୭୮ । ଇଶପ୍ କାହାଣୀ
୭୯ । ହିତ କଥା
୮୦ । ରାମାୟଣ କାହାଣୀ
୮୧ । ମହାଭାରତ କାହାଣୀ
୮୨ । ଟାଇମ୍ ମେସିନ
୮୩ । ଶ୍ରୀ
୮୪ । ଅହମିକା ଓ ଭ୍ରାନ୍ତି
୮୫ । ଜାତକ କାହାଣୀ-(୧ମ)
୮୬ । ଜାତକ କାହାଣୀ-(୨ୟ)
୮୭ । ଜାତକ କାହାଣୀ-(୩ୟ)
୮୮ । ଜାତକ କାହାଣୀ-(୪ର୍ଥ)

୮୯ । ମିତ୍ର ଲାଭ—(୧ମାଙ୍କ)

୯୦ । ମିତ୍ର ଲାଭ—(୨ୟାଙ୍କ)

୯୧ । ସୁହୃଦ୍-ଭେଦ

୯୨ । ବିଗ୍ରହ ଓ ସନ୍ଧି

୯୩ । ମଞ୍ଚତନ୍ତ୍ର

୯୪ । ମିତ୍ର-ଭେଦ—(୧ମାଙ୍କ)

୯୫ । ମିତ୍ର-ଭେଦ—(୨ୟାଙ୍କ)

୯୬ । ମିତ୍ର ପ୍ରାପ୍ତି

୯୭ । କାକୋଲୂକୀୟ

୯୮ । ଲବ୍ଧ ପ୍ରଣାଶ

୯୯ । ଅପରୀକ୍ଷିତ କାରକ

୧୦୦ । ମାଳବିକା-ଅଗ୍ନିମିତ୍ର ଓ ଉର୍ବଶୀ

୧୦୧ । ସୁହ୍ରାବ୍ ଓ ରୁସ୍ତମ୍ (ପଦ୍ୟାନୁବାଦ)

୧୦୨ । ବେତାଳ ପଞ୍ଚବିଂଶତି

୧୦୩ । ଶକୁନ୍ତଳା

୧୦୪ । ଅଳଙ୍କାର-ପ୍ରବେଶ

୧୦୫ । ବାଉଣ୍ଟି ଜାହାଜରେ ବିଦ୍ରୋହ

୧୦୬ । ରୁଷିଆ ଦେଶର ଲୋକକାହାଣୀ

୧୦୭ । ଆମ ଓଡ଼ିଶା କଥା

୧୦୮ । M. E. Translation & Composition

## ସମ୍ପାଦନା

୧୦୯ । ରୁକ୍ମିଣୀ-ବିଭା

୧୧୦ । ଚିଲିକା

୧୧୧ । ଦରବାର

୧୧୨ । ମଥୁରାମଙ୍ଗଳ

୧୧୩ । ରସକଲ୍ଲୋଳ

## ଜୀବନୀ





# ସ୍ମୃତି ଅର୍ଘ୍ୟ

ଡକ୍ଟର ଶ୍ରୀନିବାସ ମିଶ୍ର

ପରିଣତ ବୟସରେ ଦେହାବସାନ ଶରୀର-ବନ୍ଧନ ଓ ପୀଡ଼ାରୁ ଏକ ସ୍ୱାଭାବିକ ମୁକ୍ତି । ତଥାପି ପରଲୋକଗତ ବ୍ୟକ୍ତି ନିଜ ଜ୍ଞାନ, ସାଧନା, ଅଧ୍ୟବସାୟ ଓ ମହନୀୟ ବ୍ୟକ୍ତିତ୍ୱର ସୌରଭରେ ବହୁକାଳ ପର୍ଯ୍ୟନ୍ତ ଉତ୍ତର-ପୁରୁଷମାନଙ୍କୁ ସୁରଭିତ ଓ ଆଦର୍ଶରେ ଉଦ୍‌ବୋଧିତ କରିଥାନ୍ତି । ସମୟର ଅଖଣ୍ଡ ପ୍ରବାହରେ ସେମାନଙ୍କ ସ୍ମୃତି ଓ ଅବଦାନ ଦୀର୍ଘକାଳ ପର୍ଯ୍ୟନ୍ତ ଅମ୍ଳାନ ରହେ । ସେମାନଙ୍କ ସାଧନାର ପୁଣ୍ୟ ପରମ୍ପରା ଭବିଷ୍ୟତ ସମାଜର ପ୍ରେରଣା ଦାୟକ ହୁଏ । ଏଭଳି ଏକ ବଳିଷ୍ଠ ବ୍ୟକ୍ତିତ୍ୱର ଅଧିକାରୀ ଥିଲେ କର୍ମଯୋଗୀ ଅଧ୍ୟାପକ ଶିକ୍ଷାବିତ୍ ଶ୍ରୀଧର ଦାସ ।

ଅଧ୍ୟାପକ ଶ୍ରୀଧର ଦାସଙ୍କ ଜୀବନର ଇତିହାସ ଏକ ସୁଦୀର୍ଘ ଏକାଡେମିକ ସାଧନାର ଫଳଶ୍ରୁତି । ଉଚ୍ଚ ବିଦ୍ୟାଳୟର ଶିକ୍ଷକ ଭାବେ ତାଙ୍କ ସାଧନାମୟ ଜୀବନରେ ଆରମ୍ଭ ହୋଇଥିଲା । ଏ ସୂତ୍ରରେ ସେ ବାଣପୁର, ଜଗତସିଂହପୁର ଓ କୋରୁଆ ପ୍ରଭୃତି ବିଦ୍ୟାଳୟରେ ସଫଳତା ଓ ସୁନାମ ସହ ଶିକ୍ଷକତା କରିଥିଲେ । ସେ ସମୟରେ କ୍ରମ ବର୍ଦ୍ଧିଷ୍ଣୁ ଶିକ୍ଷାୟତନ ସହ ତାଙ୍କ ଜୀବନର ଗଭୀର ସମ୍ପର୍କ, ଛାତ୍ରମାନଙ୍କ ପ୍ରତି ସସ୍ନେହ ବ୍ୟବହାରର ବହୁ କାହାଣୀ ଏବେ ମଧ୍ୟ ଶୁଣାଯାଇ ଥାଏ । ନିଜ ଉଚ୍ଚାଭିଳାଷ ଓ ଅଦମ୍ୟ ଜ୍ଞାନ ସ୍ପୃହାର ଚରିତାର୍ଥତା ଲାଗି ସେ ଓଡ଼ିଆ ଭାଷା ଓ ସାହିତ୍ୟରେ ସ୍ନାତକୋତ୍ତର ଉପାଧି ଲାଭକରି ଖ୍ରୀଷ୍ଟ ମହାବିଦ୍ୟାଳୟରେ ଓଡ଼ିଆ ବିଭାଗର ମୁଖ୍ୟ ଅଧ୍ୟାପକ ଭାବେ ଯୋଗଦେଲେ । ଏ ପର୍ଯ୍ୟନ୍ତ ଗ୍ରାମ୍ୟ ପରିବେଶରେ କ୍ରମବର୍ଦ୍ଧମାନ ଜ୍ଞାନ ପିପାସୁ ଶ୍ରୀ ଦାସଙ୍କ ବ୍ୟକ୍ତିତ୍ୱ ଶିକ୍ଷା ଓ ସଂସ୍କୃତିର କେନ୍ଦ୍ର କଟକ ସହରର ପରିସର ମଧ୍ୟରେ ବିକାଶର ଅନୁକୂଳ କ୍ଷେତ୍ର ଲାଭକଲା ।

ଖ୍ରୀଷ୍ଟ ମହାବିଦ୍ୟାଳୟର ପ୍ରାରମ୍ଭିକ କାଳର ଇତିହାସ ସହ ଯେଉଁ କେତେ-ଜଣ ଅଧ୍ୟାପକଙ୍କ ଜୀବନ ଘନିଷ୍ଠ ଭାବେ ସମ୍ପୃକ୍ତ ସେମାନଙ୍କ ମଧ୍ୟରେ ଅଧ୍ୟାପକ ଦାସଙ୍କ ନାମ ବିଶେଷ ଉଲ୍ଲେଖଯୋଗ୍ୟ । ଏହି ମହାବିଦ୍ୟାଳୟର କ୍ରମିକ ଅଭିବୃଦ୍ଧି ସହ ନିଜ ଜୀବନଧାରାକୁ ସେ ଏକୀଭୂତ କରିଥିଲେ । କେବଳ ଅଧ୍ୟାପନା ନୁହେଁ, ମହାବିଦ୍ୟାଳୟର ଭୌତିକ, ଏକାଡେମିକ ଓ ପ୍ରଶାସନିକ କାର୍ଯ୍ୟକ୍ରମରେ ତାଙ୍କ ଆନ୍ତରିକ ଉଦ୍ୟମ ଓ ଅବଦାନ ଥିଲା ପ୍ରଚୁର । ଅଧ୍ୟାପନା ସମୟର ଅବସର ମଧ୍ୟରେ ଓ ସମାପ୍ତି ପରେ ମହାବିଦ୍ୟାଳୟର ପ୍ରଶାସନିକ ଦାୟିତ୍ୱ ସ୍ୱେଚ୍ଛାକୃତ ଭାବରେ ସେ ବହୁବିଳମ୍ବିତ ପ୍ରହର ପର୍ଯ୍ୟନ୍ତ ସଂପାଦନ କରୁଥିଲେ । ଏଥିଲାଗି ତାଙ୍କୁ ବହୁ ଶ୍ରମ ଓ ସମୟର ବିନିଯୋଗ କରିବାକୁ ପଡ଼ୁଥିଲା ।

ଅଧ୍ୟାପକ ଦାସ ଓଡ଼ିଆ ଅନର୍ସ ଶ୍ରେଣୀରେ ମୋ ଶିକ୍ଷାଗୁରୁ ଥିଲେ । ଓଡ଼ିଆ ସାହିତ୍ୟରେ ସ୍ନାତକୋତ୍ତର ଉପାଧି ଲାଭ କଲା ପରେ ଖ୍ରୀଷ୍ଟ କଲେଜରେ ଅଧ୍ୟାପକ ଭାବେ କର୍ମ ଜୀବନ ଆରମ୍ଭ କରିବାର ସୁଯୋଗ ମତେ ମିଳିଥିଲା । ମୋ ସହପାଠୀ ବନ୍ଧୁ ପଠାଣି ପଟ୍ଟନାୟକ ଓ ମୁଁ ଏକ ସଙ୍ଗରେ ଉକ୍ତ କଲେଜରେ ଅଧ୍ୟାପକ ଭାବେ ଯୋଗଦେଲୁ । ସେତେବେଳେ ଅଧ୍ୟା-ପକ ଶ୍ରୀଧର ଦାସ ଓ ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ ସେଠାରେ ବରିଷ୍ଠ ଅଧ୍ୟାପକ ଥାଆନ୍ତି । କର୍ମକ୍ଷେତ୍ରରେ ଯୋଗଦେଲା ପରେ ଆଦ୍ୟ ଅଧ୍ୟାପକ ଜୀବନରେ ଆମେ ଦୁହେଁ ସେମାନଙ୍କ ଠାରୁ ନାନା ଭାବରେ ଏକାଡେମିକ ସାହାଯ୍ୟ ଓ ପରାମର୍ଶ ପାଇଛୁ । ଶ୍ରେଣୀକୁ ଯିବା ପୂର୍ବରୁ ପାଠ୍ୟପ୍ରସ୍ତୁତିଗତ ଆମ୍ଭମାନଙ୍କ ବହୁ ସଂଶୟର ନିରସନ ଅଧ୍ୟାପକ ଦାସ ଓ ଅଧ୍ୟାପକ ପଣ୍ଡିତ ଆଚାର୍ଯ୍ୟ କରି ଦେଉଥିଲେ । ସେମାନଙ୍କ ଗଭୀର ଜ୍ଞାନ, ସଦୟ ସାହାଯ୍ୟ ଓ ଅଭିଜ୍ଞ ପରାମର୍ଶର ଉପାଦେୟତା ଅଧ୍ୟାପନା ସଂଶ୍ଳିଷ୍ଟ ଦୀର୍ଘ ଜୀବନରେ କେବେ ହେଲେ ଭୁଲି ହୋଇ ନାହିଁ । ଏକାଡେମିକ ସାହାଯ୍ୟ ସଙ୍ଗକୁ ଅଧ୍ୟାପକ ଦାସ ଆମ ଉଭୟଙ୍କ ପ୍ରତି ସର୍ବଦା ସସ୍ନେହ ବ୍ୟବହାର ପ୍ରଦର୍ଶନ କରୁଥିଲେ । ଖ୍ରୀଷ୍ଟ କଲେଜରେ ମୋର ଏକବର୍ଷର କାର୍ଯ୍ୟକାଳ ପରେ ମଧ୍ୟ ବହୁବର୍ଷ ପର୍ଯ୍ୟନ୍ତ ମୁଁ ଅଧ୍ୟାପକ ଦାସଙ୍କ ଠାରୁ ଅଯାଚିତ ସ୍ନେହ ପାଇଥିଲି ।

ଏକାଡେମିକ ଅନ୍ୱେଷାର ଏକ ଜୀବନ୍ତ ବିଗ୍ରହ ଥିଲେ ଅଧ୍ୟାପକ ଶ୍ରୀଧର ଦାସ । କିଛି ନୂତନ ତଥ୍ୟର ସନ୍ଧାନ ପାଇଲେ ସେ ଆଗ୍ରହ

ସହକାରେ ସଙ୍ଗେ ସଙ୍ଗେ ଲେଖି ରଖୁଥିଲେ । ନିଜ ଆଗ୍ରହ ଓ ଅଧ୍ୟବସାୟ ବଳରେ ସେ ବହୁ ପାଠ୍ୟ ପୁସ୍ତକ ଓ ଶିଶୁ ସାହିତ୍ୟ ରଚନା କରିଥିଲେ । ବହୁ ତଥ୍ୟଗର୍ଭ ଗ୍ରନ୍ଥକୁ ବିଷୟ ସଂଗ୍ରହ ପୂର୍ବକ ସେ ଓଡ଼ିଆ ଶିଶୁ ସାହିତ୍ୟକୁ ପରିପୁଷ୍ଟ କରିଥିଲେ । ବହୁ ମହାପୁରୁଷଙ୍କ ଜୀବନୀ, ବିଦେଶୀ ସାହିତ୍ୟର ବହୁ ଗଳ୍ପ ସେ ଓଡ଼ିଆରେ ଲେଖିଥିଲେ । ତାଙ୍କ ରଚିତ 'ସର୍ବସାର ବ୍ୟାକରଣ' ଦୀର୍ଘକାଳାବଧି ଓଡ଼ିଆରେ ଏକ ବହୁଳ ପ୍ରଚଳିତ ନିର୍ଭରଯୋଗ୍ୟ ବ୍ୟାକରଣ । ଏହା ଛାତ୍ରମାନଙ୍କ ଓଡ଼ିଆ ଭାଷା ଜ୍ଞାନ ବୃଦ୍ଧିରେ ସହାୟକ । ଓଡ଼ିଆ ଅନୁବାଦ ସାହିତ୍ୟକୁ ସେ ପରିପୁଷ୍ଟ କରିଥିଲେ । ନିରଳସ ସାଧନା ଓ ଅଧ୍ୟବସାୟ ଫଳରେ ସାହିତ୍ୟିକ ଉଦ୍ୟୋଗର ସଫଳତା ସେ ପ୍ରତିପାଦନ କରି ପାରିଥିଲେ । ତାଙ୍କ ପ୍ରକାଶିତ ଗ୍ରନ୍ଥ ସମୂହର ସଂଖ୍ୟା ଶତାଧିକ । ବହୁ ପ୍ରାଚୀନ ଓ ମଧ୍ୟଯୁଗୀୟ କାବ୍ୟ ଗ୍ରନ୍ଥର ସଟୀକ ସମ୍ପାଦନା ଫଳରେ ସେ ଛାତ୍ରମାନଙ୍କର ସାହିତ୍ୟାନୁଶୀଳନରେ ସହାୟକ ହୋଇଥିଲେ ।

ଅଧ୍ୟାପକ ଶ୍ରୀଧର ଦାସ ନିଜ ନାମକୁ ସାର୍ଥକ କରିଥିଲେ । ସେ ଯଥାର୍ଥରେ ଥିଲେ ଶ୍ରୀ ବା ସମୃଦ୍ଧିର ଧାରକ । ନିଜ ସାହିତ୍ୟିକ ଜୀବନର ନୈଷ୍ଠିକ ସାଧନାର ଫଳଶ୍ରୁତି ସ୍ୱରୂପ ସେ ନିଜ ବୈଷୟିକ ଜୀବନରେ ମଧ୍ୟ ଉନ୍ନତି କରିଥିଲେ । ନିଜ ତିନିପୁଅ ଓ ଏକମାତ୍ର କନ୍ୟାଙ୍କୁ ସେ ଉଚ୍ଚଶିକ୍ଷିତ ଓ ସୁମନୁଷ୍ୟ ଭାବେ ଗଢ଼ିଥିଲେ । ସେମାନେ ବିଭିନ୍ନ କ୍ଷେତ୍ରରେ ସୁପ୍ରତିଷ୍ଠିତ । ଜ୍ୟେଷ୍ଠ ଡକ୍ଟର ଜଗନ୍ନାଥ ପ୍ରସାଦ ଦାସ ଭାରତୀୟ ପ୍ରଶାସନ ସେବାର ଜଣେ ବରିଷ୍ଠ ଅଧିକାରୀ ଥିଲେ । ବୃତ୍ତିଗତ ଜୀବନର ଶୀର୍ଷବିନ୍ଦୁରେ ଉପନୀତ ହେବା ପୂର୍ବରୁ ସେ ଆନୁଷ୍ଠାନିକ ଜୀବନରୁ ସ୍ୱେଚ୍ଛା-କୃତ ଅବସର ନେଇ କଳା ଓ ସାହିତ୍ୟ ସେବାରେ ପୂର୍ଣ୍ଣପ୍ରାଣରେ ଆତ୍ମ ନିୟୋଗ କରି ଯଶସ୍ୱୀ ହୋଇଛନ୍ତି । ନିଜ ପିତାଙ୍କ ସରଳ ଜୀବନ ସଙ୍ଗକୁ ଉଚ୍ଚ ଚିନ୍ତା ତାଙ୍କ ଜୀବନକୁ ପ୍ରଭାବିତ କରିଛି । ଦ୍ୱିତୀୟ ପୁତ୍ର ଶ୍ରୀ କୃଷ୍ଣ-ପ୍ରସାଦ ଭାରତୀୟ ରେଳ ପ୍ରଶାସନ ସେବାର ଜଣେ ଉଚ୍ଚପଦସ୍ଥ ଅଧିକାରୀ ଓ ତୃତୀୟ ପୁତ୍ର ରଘୁନାଥ ପ୍ରସାଦ ଜଣେ ନିର୍ବାହୀ ଯନ୍ତ୍ରୀ । ଏମାନଙ୍କ ଶିକ୍ଷା ଓ ପ୍ରତିଷ୍ଠା ମୂଳରେ ଅଧ୍ୟାପକ ଦାସଙ୍କ ସତର୍କ ଦୃଷ୍ଟି, ବ୍ୟକ୍ତିତ୍ୱର ବଳିଷ୍ଠ ପ୍ରଭାବ ଓ ପ୍ରେରଣା କାର୍ଯ୍ୟକାରୀ ହୋଇଥିଲା । ଏହା ସଙ୍ଗକୁ ତାଙ୍କ ଜାମାତା ଡକ୍ଟର ନବକିଶୋର ବେହୁରା ଉତ୍କଳ ବିଶ୍ୱବିଦ୍ୟାଳୟ ନୃତତ୍ତ୍ୱ ବିଭାଗର ମଧ୍ୟ ମୁଖ୍ୟ ଅଧ୍ୟାପକ ।

ଜଣେ ନିଷ୍ଠାପର ଶିକ୍ଷକ ଭବେ ଅଧ୍ୟାପକ ଦାସ ଯଥେଷ୍ଟ ସୁନାମ ଅର୍ଜନ କରିଥିଲେ । ତାଙ୍କ କର୍ତ୍ତବ୍ୟ ନିଷ୍ଠା ଓ ନିଜ କର୍ମସ୍ଥଳ ପ୍ରତି ଜଡ଼ିତ ମନୋଭବ ଅସାଧାରଣ ଥିଲ । ଛାତ୍ରମାନଙ୍କ ପ୍ରତି ସେ ଅତ୍ୟନ୍ତ ସ୍ନେହଶୀଳ ଥିଲେ । ଖ୍ରୀଷ୍ଟ କଲେଜର ପ୍ରଶାସନିକ ଦାୟିତ୍ୱ ନିର୍ବାହ ଅବସରରେ ଓ ବାହାରେ ସେ ବହୁ ଛାତ୍ରଙ୍କ ସୁବିଧା ସୁଯୋଗ ଏବଂ ଶିକ୍ଷାଗତ ଉନ୍ନତି ପ୍ରତି ଆଗ୍ରହୀ ମନୋଭବ ପ୍ରଦର୍ଶନ କରୁଥିଲେ ।

ଅଧ୍ୟାପକ ଦାସଙ୍କ ସାଧୁତା ଓ କର୍ତ୍ତବ୍ୟ ନିଷ୍ଠାର ଆଉ ଏକ ଦୃଷ୍ଟାନ୍ତ ହେଉଛି ଛାତ୍ରମାନଙ୍କ ପରୀକ୍ଷାର ଉତ୍ତର ପତ୍ରର ମୂଲ୍ୟାଙ୍କନ ବ୍ୟାପାରରେ ତାଙ୍କର ନିଷ୍ଠା । ବହୁ ସମୟରେ ଦେଖାଯାଏ ପରିଣତ ବୟସରେ ଅଧ୍ୟାପକ ଦାସ ନିଜ ଘର ବାରଣ୍ଡାର ଚଟାଣରେ ବସି ଅଣ୍ଟା ପାଖରେ ତକିଆ ରଖି ଉତ୍ତର ପତ୍ରର ମୂଲ୍ୟାଙ୍କନ କରୁଛନ୍ତି ବା କିଛି ଲେଖାପଢ଼ା କରୁଛନ୍ତି । ନିଜେ ମୁଖ୍ୟ ପରୀକ୍ଷକ ଥିଲା ବେଳେ କୌଣସି ସହକାରୀ ପରୀକ୍ଷକଙ୍କ ସନ୍ତୋଷ ଜନକ ମନେ ନହେଲେ ସେ ତାଙ୍କୁ ନିଜ ଘରକୁ ଡକାଇ ଉତ୍ତର ପତ୍ର ଗୁଡ଼ିକର ସନ୍ତୋଷ ଜନକ ମୂଲ୍ୟାଙ୍କନ କରାଇ ନେଉ ଥିଲେ । ଛାତ୍ରମାନଙ୍କ ଭବିଷ୍ୟତ ଉନ୍ନତି ସହ ପ୍ରତ୍ୟକ୍ଷ ଭବେ ଜଡ଼ିତ ପରୀକ୍ଷା ପତ୍ରର ନିରପେକ୍ଷ ଓ ଯଥାଯଥ ମୂଲ୍ୟାଙ୍କନ ପ୍ରତି ତାଙ୍କର ସତର୍କ ଦୃଷ୍ଟି ରହୁଥିଲ ।

ସାମାଜିକ ଜୀବନରେ ନିଜ ପ୍ରତିବେଶୀ ସହଯୋଗୀ କର୍ମୀମାନଙ୍କ ପ୍ରତି ତାଙ୍କ ବ୍ୟବହାର ଅତ୍ୟନ୍ତ ଆନ୍ତରିକତା ପୂର୍ଣ୍ଣ ଥିଲ । ସେ କାଳରେ ଖ୍ରୀଷ୍ଟ ମହାବିଦ୍ୟାଳରେ ଓଡ଼ିଶା ବାହାରର ବହୁ ଅଧ୍ୟାପକ ବିଭିନ୍ନ ବିଷୟରେ ଶିକ୍ଷାଦାନ କରୁଥିଲେ । ଅଧ୍ୟାପକ ଦାସ ସେମାନଙ୍କ ପ୍ରତି ଅତ୍ୟନ୍ତ ବନ୍ଧୁ-ବତ୍ସଳ ଥିଲେ ଏବଂ ସେମାନେ ମଧ୍ୟ ତାଙ୍କୁ ଯଥୋଚିତ ସମ୍ମାନ ପ୍ରଦର୍ଶନ କରୁଥିଲେ । ବିଭିନ୍ନ ବ୍ୟାପାରରେ ତାଙ୍କ ସୁଚିନ୍ତିତ ଓ ଯଥାଯଥ ପରାମର୍ଶ ତାଙ୍କ ବନ୍ଧୁମାନଙ୍କ ପକ୍ଷରେ ଗ୍ରହଣୀୟ ଓ ଉପକାରକ ଥିଲ । କର୍ମକ୍ଷେତ୍ରରୁ ଅବସର ନେଲପରେ ମଧ୍ୟ ସହଯୋଗୀ ବନ୍ଧୁମାନଙ୍କ ପ୍ରତି ସେ ସସ୍ନେହ ଆନ୍ତରିକତା ପୂର୍ଣ୍ଣ ବ୍ୟବହାର ପ୍ରଦର୍ଶନ କରୁଥିଲେ ।

ଅଧ୍ୟାପକ ଦାସଙ୍କ ଜୀବନ ଥିଲ ଯଥାର୍ଥ ସାଧକର ନିରଳସ ଜୀବନ । ଏକନିଷ୍ଠ ସାଧନା ଓ ଅଧ୍ୟବସାୟ ବଳରେ ସେ ନିଜ ଏକାଡେମିକ

ଜୀବନକୁ ସାର୍ଥକ କରିଥିଲେ । ସଦା ସ୍ନେହବତ୍ସଳ, ଉଦ୍ୟୋଗୀ, ଶାନ୍ତପ୍ରାଂଶ ଏହି ସୁପୁରୁଷ ଜୀବନର ଶେଷକାଳ ପର୍ଯ୍ୟନ୍ତ ସୁସ୍ଥ ସବଳ ଓ କର୍ମରତ ଥିଲେ । ଦେହାନ୍ତ ପୂର୍ବରୁ ତାଙ୍କ ରୋଗଶଯ୍ୟା ନିକଟରେ ଠିଆ ହୋଇ ମନେ ହେଉଥିଲା ସତେ ଯେପରି ମରଣର ଶୀତଳତା ତାଙ୍କୁ ସ୍ପର୍ଶ କରିବା ସହଜ-ସାଧ୍ୟ ନୁହେଁ । ଏଭଳି କର୍ମବୀର ସାଧକମାନଙ୍କ ଜୀବନ ଯଥାର୍ଥରେ ଫଳପ୍ରଦ ପ୍ରଭାବସଞ୍ଚାରୀ ସ୍ମରଣୀୟ ଜୀବନ ।

ଅଧ୍ୟାପକ ଦାସଙ୍କ ମହନୀୟ ବ୍ୟକ୍ତିତ୍ୱର ସ୍ମୃତି ଚାରଣା କରି ତାଙ୍କର ବହୁ ସହଯୋଗୀ ଅଧ୍ୟାପକ ବନ୍ଧୁ, ସମାଜସେବୀ, ଶିକ୍ଷାବିତ୍ ଉପାଦେୟ ପ୍ରବନ୍ଧ ରଚନା କରିଛନ୍ତି । ଏହି ରଚନା ଗୁଡ଼ିକରେ ଅଧ୍ୟାପକ ଦାସଙ୍କ ସାଧୁତା, କର୍ମନିଷ୍ଠା, ନିୟମାନୁବର୍ତ୍ତିତା ଭଳି ବ୍ୟକ୍ତିତ୍ୱର ମହନୀୟ ଗୁଣାବଳୀ ଓ ବହୁମୁଖୀ ଦିଗ ଉନ୍ମୋଚିତ ହୋଇଛି । ସାଧାରଣ ଜୀବନ କ୍ଷେତ୍ରରେ ଚଳପ୍ରଚଳ ହେଉଥିବା ବହୁ ଅସାଧାରଣ ବୈଶିଷ୍ଟ୍ୟର ଅଧିକାରୀ ଏଭଳି ବ୍ୟକ୍ତିଙ୍କର ସ୍ମୃତି ଚାରଣା ଓ ଗୁଣାବଳୀର ଅନୁଧ୍ୟାନ ଉତ୍ତର ପୁରୁଷଙ୍କ ନିମନ୍ତେ ପଥପ୍ରଦର୍ଶକ, ସମାଜ ପକ୍ଷରେ ଉପକାରକ ।

